# ଡାକ୍ତରଙ୍କ ସତ୍ୟତା ପ୍ରତିପାଦନ

ଜଣେ ଡାକ୍ତରଙ୍କ କାର୍ଯ୍ୟ, କଦାପି ସହଜ ନୁହେଁ · · ବାରମ୍ବାର ଜରୁରୀ ଆବଶ୍ୟକତା, କାର୍ଯ୍ୟକରିବା ସମୟ, ବିଷମ ସମୟରେ ରୋଗୀମାନଙ୍କୁ ଚିକିତ୍ସା କରିବା · · ଏସବୁ ବଡ କ୍ଲାନ୍ତି କର । ତେଣୁ ମୁଁ, ହର୍ଲିକ୍ସ୍ ଉପରେ ନିର୍ଭର କରେ । ହର୍ଲିକ୍ସ୍‌ରେ ରହିଛି, ପୁଷ୍ଟିକର ଉପାଦାନମାନ, ଯାହାକି ବେଶ୍ ରୁଚିକର ।

ତା' ଛଡ଼ା, ଏକ ବଳକାରକ ପାନୀୟ ହୋଇଥିବାରୁ ଦିନଯାକ ପରିଶ୍ରମକରି ହାଲିଆ ହେବାପରେ, ଏହା କ୍ଲାନ୍ତି ଦୂର କରିବାରେ ମୋତେ ସାହାଯ୍ୟ କରେ । ଏଣୁ ଦିନରେ ଦୁଇଥର ହର୍ଲିକ୍ସ୍ ପିଇବା ପାଇଁ ମୁଁ ସର୍ବଦା ପରାମର୍ଶ ଦିଏ ।

ମୁଁ ସବୁକିଛି ଜାଣେ ! ସେଇଥିପାଇଁ ତ ମୁଁ ବି ଏହାକୁ ପିଏ !




ଦୁନିଆ ସାରା ଡାକ୍ତରଙ୍କ ଆସ୍ଥା ଭାଜନ

ହର୍ଲିକ୍ସ ହେଉଛି ଏକ ସୁସ୍ୱାଦୁ ପାନୀୟ । ଏଥିରେ କ୍ରୀମଯୁକ୍ତ ଦୁଧ, ମାଲଟେଡ୍ ବାର୍ଲି ଏବଂ ସୁନେଲି ଗହମର ସମସ୍ତ ପୋଷଣକାରି ଗୁଣ ଭରି ରହିଛି । ଏଣୁ ସାରା ଦୁନିଆଁରେ ଲକ୍ଷ ଲକ୍ଷ ପରିବାର ୧୦୦ ବର୍ଷରୁ ଅଧିକକାଳ ହେଲା, ହର୍ଲିକ୍ସ ଉପରେ ଭରସା ରଖି ଆସିଛନ୍ତି । ଏହା ପୁଷ୍ଟି ସାଧନର ଉତ୍ତମ ଆଧାର ରୂପେ ବିଶ୍ୱାସ ଭାଜନ ହୋଇ ପାରିଛି ।




ପୁଷ୍ଟି ଯୋଗାଇବାରେ ଅତୁଳନୀୟ

HMM-9239 ORI



ସାନ ସ୍ୱପ୍ନ'ର ମନ ମୋଟେ ଭଲ ନାହିଁ
ଖେଳ ଖେଳିବା ବିନା ତ ରହି ହୁଏ ନାହିଁ ।
ସିଏ କିସ ବା କରିବ ଯା' ଦେହ ଭଲ ନାହିଁ
ଖେଳ ସାଙ୍ଗସାଥି କେହି ଶେଯ ପାଖ ମାଡ଼ନ୍ତି ନାହିଁ ॥
ଏକା ଖେଳିବା ଲାଗି ବହୁ ଭାବି ଚିନ୍ତି
ବାକ୍ସରୁ କାଢ଼ିଲା ସିଏ ୧୨ ରଙ୍ଗରଙ୍ଗିଆ ସାଥି ।
କାଗଜ ଉପରେ ଦେଖ, କଲମ କରେ ଗତି
ସୃଷ୍ଟି ହେଲା ଗୁଡ଼ି, ନଙ୍କ, ବଲେଇ, ଘଣ୍ଟା, ହାତି ॥
ଏକୋ ସବେ ଉପଯୋଗୀ, ସାଗୁଆ, ନେଳିଆ
ବାଦାମୀ, ହଳଦି ପୁଣି ପାଟଳ, ନାଲିଆ ।
ଭାଓଲେଟ୍, ଗାଇଗଢ଼ି ଆଉ ନାରଙ୍ଗି, କାଳିଆ
ତମ ଲାଗି ପ୍ରତି ସେଟ୍ ପେ ଦଶ ରଙ୍ଗିଆ








# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍‌ଡୀ

ଏ ସଂଖ୍ୟାରେ ପରିବେଷିତ ବେତାଳ କଥା "ବ୍ରହ୍ମରାକ୍ଷସୀର ବ୍ୟବହାର" ବହୁତ ତାତ୍ପର୍ଯ୍ୟପୂର୍ଣ୍ଣ । ସାଧାରଣ ଭାବରେ ଜଣେ ମଣିଷ ସାଧୁ ବା ବିବେକୀ ଥାଇପାରେ, କିନ୍ତୁ କ୍ଷମତା ପାଇବା ପରେହିଁ ତା'ର ହୁଏ ଅସଲ ପରୀକ୍ଷା । ଯିଏ କ୍ଷମତା, ପ୍ରତିପତ୍ତି ପାଇ ମଧ୍ୟ ବିବେକୀ ରହିପାରେ, ସିଏ ଏକା ସଚ୍ଚା ମଣିଷ ।

## ଅମରବାଣୀ

ଗୁଣେଷୁ କ୍ରିୟତାଂ ଯତ୍ନଃ, କିମାଟୋପୈ ପ୍ରୟୋଜନମ୍ ।
ବିକ୍ରୀୟନ୍ତେ ନ ଘଣ୍ଟାଭିର୍ଗାବଃ, କ୍ଷୀରବିବର୍ଜିତାଃ ॥

[ପ୍ରଯତ୍ନ ଦ୍ୱାରା ଯିଏ ନିଜ ଭିତରେ ଗୁଣର ବିକାଶ କରି ପାରିବ, ତା'ର ବାହ୍ୟାଡମ୍ବରରେ କି ପ୍ରୟୋଜନ ? ଦୁଧ ଦେଉ ନଥିବା ଗାଈକୁ ତା' ବେକରେ ବନ୍ଧା ହୋଇଥିବା ଘଣ୍ଟି ପାଇଁ କ'ଣ କେହି କିଣିବ ?]

ବର୍ଷ :- ୨୧ ଅଗଷ୍ଟ ୧୯୮୭ ଅଙ୍କ : ୨

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

'ଚନ୍ଦାମାମା'ର ଉପହାର!

# ମହାନ ଭାରତ ଐତିହ୍ୟ ପ୍ରତିଯୋଗିତା

## ତିନ ଚିତ୍ତାକର୍ଷକ କିସ୍ତିରେ

| ପ୍ରତିଯୋଗିତା—୧ | ପ୍ରତିଯୋଗିତା—୨ | ପ୍ରତିଯୋଗିତା—୩ |
|---|---|---|
| ଭାରତର ବିଖ୍ୟାତ ରାଜା ବୃନ୍ଦ | ଭାରତର ବିଖ୍ୟାତ ରାଣୀ ବୃନ୍ଦ | ଭାରତର ବିଖ୍ୟାତ ଯୋଡ଼ି ବୃନ୍ଦ |







ପ୍ରତି ଭାଷାରେ ଗୋଟିଏ ଲେଖାଏଁ ଏଗାରଟି ଭାଷାରେ ବଡ଼ ପୁରସ୍କାର

୧୧ଟି ପ୍ରଥମ ପୁରସ୍କାର : ୨୦୦୦ ଟଙ୍କାର ଛାତ୍ରବୃତ୍ତି

୧୧ଟି ଦ୍ୱିତୀୟ ପୁରସ୍କାର : ୧୦୦୦ ଟଙ୍କାର ଛାତ୍ରବୃତ୍ତି

୧୧ଟି ତୃତୀୟ ପୁରସ୍କାର : ୫୦୦ ଟଙ୍କାର ଛାତ୍ରବୃତ୍ତି

**ଏହା ଛଡ଼ା ବିଶେଷ ପୁରସ୍କାର**

୧ମ ବିଶେଷ ପୁରସ୍କାର : ୧୦,୦୦୦ ଟଙ୍କାର ବୃତ୍ତି

୨ୟ ବିଶେଷ ପୁରସ୍କାର : ୫୦୦୦ ଟଙ୍କାର ବୃତ୍ତି

୩ୟ ବିଶେଷ ପୁରସ୍କାର : ୨୫୦୦ ଟଙ୍କାର ବୃତ୍ତି

ପାଞ୍ଚବର୍ଷ ଭିତରେ ପାଞ୍ଚ ସମାନ କିସ୍ତିରେ ବିତରିତ ହେବ । ଆହୁରି ମଧ୍ୟ ୨୨୦ଟି ସାନ୍ତ୍ୱନା ପୁରସ୍କାର—ବର୍ଷକ ପାଇଁ 'ଜହ୍ନମାମୁଁ' ମାଗଣା ।

ସେପ୍ଟେମ୍ବର ସଂଖ୍ୟା 'ଜହ୍ନମାମୁଁ'ରେ ପ୍ରତିଯୋଗିତା—୧ର ବିବରଣୀ ପ୍ରକାଶ ପାଇବ । ତିନୋଟିଯାକ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରନ୍ତୁ ଏବଂ ବିଶେଷ ପୁରସ୍କାର ପାଇଁ ମଧ୍ୟ ଚେଷ୍ଟା କରନ୍ତୁ ।

HTA 7076

# ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



## ଏଭରେଷ୍ଟର ପ୍ରତିଦ୍ୱନ୍ଦୀ?

ଆମେରିକା ପ୍ରେରିତ ଉପଗ୍ରହ ଯୋଗାଉଥିବା ତଥ୍ୟ ଠିକ୍ ହୋଇଥିଲେ ଏଭରେଷ୍ଟ୍ ପୃଥିବୀର ଉଚ୍ଚତମ ଶୃଙ୍ଗ ନ ହୋଇପାରେ । ଆପାତତଃ 'କେ-୨' ବୋଲି ନାମିତ ହିମାଳୟର ଅନ୍ୟ ଏକ ଶୃଙ୍ଗ ଏଭରେଷ୍ଟଠୁଁ ସାମାନ୍ୟ ଅଧିକ ଉଚ୍ଚ ହୋଇପାରେ । ତେବେ ସଠିକ୍ ଜଣାପଡ଼ି ନାହିଁ ।

## ଦ୍ୱାରକା-ସନ୍ଧାନ

ଶ୍ରୀକୃଷ୍ଣଙ୍କ ଦ୍ୱାରା ସ୍ଥାପିତ ଏବଂ ତାଙ୍କ ଦେହତ୍ୟାଗ ପରେ ସମୁଦ୍ରରେ ବିଲୀନ ଦ୍ୱାରକା ଖାଲି ପୌରାଣିକ କିମ୍ବଦନ୍ତୀ ମାତ୍ର ନା ଐତିହାସିକ ସତ୍ୟ? ବର୍ତ୍ତମାନ ସେଠାକାର ସମୁଦ୍ରରେ ଚାଲିଥିବା ଅନୁସନ୍ଧାନରୁ ଯେତିକି ଜଣାପଡୁଛି, ପ୍ରାୟ ସାଢ଼େ ତିନିହଜାର ବର୍ଷ ତଳେ ସେଠାରେ ଥିଲା ଏକ ସହର, ଯାହା ଜଳମଗ୍ନ ।







## ପାରିବାରିକ ସିମ୍ପାଞ୍ଜି

ଜୟପୁରର ପ୍ରତାପ ଯେତେବେଳେ ପାଞ୍ଚମାସର ଛୋଉଣ୍ଡ ସିମ୍ପାଞ୍ଜି ଶାବକ ରାଧାକୁ ଘରକୁ ନେଇଗଲା, ସେତେବେଳେ ସେ ଏକ କଠିନ କାମ ହାତକୁ ନେଇଥିଲା ବୋଲି କହିବାକୁ ହେବ । ଆଜି ରାଧା ନିଜେ ନିଜେ ଲୁଗା ପିନ୍ଧି ପାରୁଛି ଓ ଗୃହା ପିଇ ପାରୁଛି !

## ରାକ୍ଷସ ଝିଟିପିଟି

ତିରୁପତିର ୪୫ କି.ମି. ପଶ୍ଚିମକୁ ଥାଲ୍ଲକୋନା ଘନ ଅରଣ୍ୟରେ ୮ ଫୁଟ ଲମ୍ବ ଝିଟିପିଟିଟିଏ ମିଳିଛି । ଶ୍ରୀ ଭେଙ୍କଟେଶ୍ୱର ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଓ ଛାତ୍ରମାନେ ଏହାର ଫୋଟୋ ନେଇଛନ୍ତି । ତିରିଶ ବର୍ଷ ତଳେ ଆଉ ଥରେ ଏପରି ଝିଟିପିଟିଟିଏ ଦେଖାଯାଇଥିଲା ।



# ଶଲ

ପ୍ରଖ୍ୟାତ ଇକ୍ଷ୍ୱାକୁ ରାଜବଂଶର ଜଣେ ରାଜକୁମାର ହେଲେ ଶଲ । ସେ ଥିଲେ ଅତ୍ୟନ୍ତ ଶିକାର-ପ୍ରିୟ ।

ଥରେ ସେ ତାଙ୍କ ରଥରେ ବସି ବଣ ଭିତରେ ଗୋଟିଏ ମୃଗକୁ ଅନୁସରଣ କଲେ । ଅଶ୍ୱମାନେ କ୍ଳାନ୍ତ ହେବା ସତ୍ତ୍ୱେ ସେ ତାଙ୍କ ଶିକାର ଛାଡ଼ିବାକୁ ପ୍ରସ୍ତୁତ ନଥିଲେ ।

ଅଦୂରରେ ଥିଲା ଋଷି ବାମଦେବଙ୍କ କୁଟୀର । ରାଜକୁମାର ଶଲଙ୍କୁ ଜଣାଥିଲା ଯେ ସେ ଋଷି ଯୋଡ଼ିଏ ବଳବାନ ଘୋଡ଼ା ପାଳିଥିଲେ । ସେ ଯାଇ ଋଷିଙ୍କୁ କହିଲେ, “ମହାଶୟ, ଅଳ୍ପ ସମୟ ପାଇଁ ଆପଣଙ୍କ ଘୋଡ଼ା ଦୁଇଟି ମୁଁ ନେଇପାରେଁ ?

“ନେଇ ପାର । କିନ୍ତୁ କାମ ସରିବା ମାତ୍ରେ ଆଣି ଫେରାଇ ଦେବ; ଏଇ ହେଲା ସର୍ତ୍ତ ।” ଋଷି କହିଲେ । “ନିଶ୍ଚୟ !” କହି ରାଜକୁମାର ଅଶ୍ୱ ଦୁଇଟି ରଥରେ ଯୋଖି ଚାଲିଗଲେ ।

ସେ ଦେଖିଲେ ସେ ଅଶ୍ୱ ଦୁଇଟି ଯେପରି ବଳବାନ, ସେହିପରି କ୍ଷିପ୍ର । ମୃଗୟା ଶେଷରେ ରାଜକୁମାର ସେ ଦୁଇଟିକୁ ଧରି ନଅର ଅଭିମୁଖେ ଚାଲିଲେ ।

“ରାଜକୁମାର, ଅଶ୍ୱ ଦୁଇଟି ଫେରାଇବାକୁ ଭୁଲିବେ ନାହିଁ ।” ଋଷିଙ୍କର ଜଣେ ଶିଷ୍ୟ ତାଙ୍କୁ ଡାକଦେଇ କହିଲା ।

କିନ୍ତୁ ରାଜକୁମାର ସେ ପରାମର୍ଶ ଶୁଣିଲେ ନାହିଁ । ସେ ବଣ ପାରି ହେବା ମାତ୍ରେ ସେ ଅଶ୍ୱ ଦୁଇଟି ଭୟଙ୍କର ରାକ୍ଷସରେ ପରିଣତ ହେଲେ ଓ ତାଙ୍କ ରଥ ଓଲଟାଇ ଦେବା ସଙ୍ଗେ ସଙ୍ଗେ ତାଙ୍କୁ ମାରି ପକାଇଲେ ।

କହିବା ବାହୁଲ୍ୟ, ସେ ଦୁଇଟି ପ୍ରକୃତରେ ଅଶ୍ୱ ନଥିଲେ । ଦୁଇଟି ରାକ୍ଷସଙ୍କୁହିଁ ଋଷି ଅଶ୍ୱ ରୂପ ଦେଇ ରଖିଥିଲେ ।





# ଗଙ୍ଗାଜଳ

ଧର୍ମଶାଳର ଗାଁରେ ଥିଲେ ଜଣେ ମହାଜନ । ନାମ କରମଗୃଢ । ସେ ଯେପରି ଲୋଭୀ, ସେହିପରି ନିଷ୍ଠୁର । ସେ ଲୋକଙ୍କୁ ଟଙ୍କା କରଜ ଦେବାବେଳେ ଏପରି ଭାବ ଦେଖାଉଥିଲେ, ସତେ ଅବା ଲୋକଙ୍କ ଉପକାର କରିବା ତାଙ୍କର ଏକମାତ୍ର ଉଦ୍ଦେଶ୍ୟ । କିନ୍ତୁ ଯେତେବେଳେ କରଜ ଆଦାୟ କରିବା ସମୟ ହୁଏ, ସେତେବେଳେ ସେ ଭାବ କାହିଁ କୁଆଡ଼େ ଉଭେଇ ଯାଏ । କରଜ କରିଥିବା ଲୋକ ଯେତେ ଗରିବ ହେଉନା କାହିଁକି, ସେ ତା'ଠୁଁ ନିଜର ତଥାକଥିତ ପ୍ରାପ୍ୟ ସୁଧ ଆଦାୟ କରି ନେଉଥିଲେ । ଗୋଟାଏ ପଇସା ମଧ୍ୟ ଛାଡ଼ୁ ନଥିଲେ ।

କରମଗୃଢଙ୍କର ଏକମାତ୍ର ପୁତ୍ର ଦୁର୍ଯ୍ୟୋଧନ ବାପାଙ୍କଠାରୁ କାରବାର ଶିଖିଲା । ଟଙ୍କା କରଜ ଦେବାରେ ଓ ଋଣ ଆଦାୟ କରିବାରେ ସେ ବି ବାପାଙ୍କର କଳା କୌଶଳ ସବୁ ଶିଖିଗଲା । କାରବାର ଆହୁରି ଭଲ ଚାଲିଲା ।

ବାପା ଯେତିକି ଖୁସି, ପୁଅ ବି ସେତିକି ଖୁସି । "ପୁଅ! ଜୀବନରେ କାହାର କେତେବେଳେ କ'ଣ ହେବ, ସେକଥା କେହି କହିପାରିବ ନାହିଁ । ତେଣୁ ତୁ ଯେତେ ଶୀଘ୍ର ପାରୁଛୁ, ମୋଠୁଁ ସବୁ କଥା ଶିଖି ନେ । ଆଇନ୍ କାନୁନ୍ ବଡ଼ ଅଡୁଆ କଥା । ମୁଁ ଜୀବନ ସାରା ସେସବୁ ଧ୍ୟାନ ଦେଇ ଶିଖିଛି । କିନ୍ତୁ ତତ୍ତ୍ୱଜ୍ଞାନ ଅପେକ୍ଷା ଅଧିକ ଦରକାରୀ ଓ ଉପକାରୀ ହେଲା ଅଭିଜ୍ଞତା । ଲୋକଚରିତ୍ର ଭଲ ଭାବରେ ବୁଝିବାକୁ ହେବ । ତା'ହେଲେ ଯାଇ ଆମ କାରବାରରେ ସଫଳତା ମିଳିବ ।" କରମଗୃଢ ମଧ୍ୟେ ମଧ୍ୟେ ଉପଦେଶ ଦେବା ଛଳରେ ପୁଅକୁ କହୁଥାନ୍ତି ।

ଆଶାଲତା



କରମଗୃଦ୍ଧ ସିନା ଜୀବନ କ୍ଷଣସ୍ଥାୟୀ ବୋଲି କଥାରେ କହୁଥାନ୍ତି, କିନ୍ତୁ ସେଥିରେ ନିଜେ ସେ ବିଶ୍ୱାସ କଲାଭଳି ମନେ ହେଉ ନଥାଏ । ଅନ୍ତତଃ ସେ ନିଜେ କେବେ ମରିବେ, ତାଙ୍କ କାରବାର ଓ କୂଟବୁଦ୍ଧିରୁ ସେକଥା ସେ ଭାବୁଛନ୍ତି ବୋଲି ଜଣାଯାଉ ନଥିଲା ।

କିନ୍ତୁ ହଠାତ୍ ଦିନେ କରମଗୃଦ୍ଧ ବେମାର ପଡ଼ିଲେ । ଧର୍ମସାଗର ଗାଁର ଦୁଇଜଣଯାକ ଯେତେ ପ୍ରକାରେ ଔଷଧ ଦେଲେ ମଧ୍ୟ ତାଙ୍କ ଅବସ୍ଥାରେ ଉନ୍ନତି ଦେଖା ଦେଲା ନାହିଁ । ଏଣେ ଦୁର୍ଯ୍ୟୋଧନ ସହରରୁ ବଡ଼ ବୈଦ୍ୟ ଡକାଇବାର ପ୍ରସ୍ତାବ କଲେ କରମଗୃଦ୍ଧ ସେ ପ୍ରସ୍ତାବକୁ ଗ୍ରହଣ କରନ୍ତି ନାହିଁ । ଅସଲ କାରଣ, ସେଥିରେ ଗୁଡ଼ାଏ ଟଙ୍କା ଖର୍ଚ୍ଚ ହୋଇଯିବ ।

"ବାପା, ସହରକୁ ନଗଲେ ଚଳିବ ନାହିଁ ।" ଦୁର୍ଯ୍ୟୋଧନ କହେ ।

"କାହାର ଚଳିବ ନାହିଁ? ମୋର ତ ଠିକ୍ ଚଳି ଯାଉଛି । ଏଇ ଗାଁ ବୈଦ୍ୟଙ୍କ ଔଷଧରେ ଏତେଦିନ ଯାଏ ସବୁ ରୋଗରୁ ଭଲ ହୋଇ ଆସୁଛି । ଏବେ କାହିଁକି ନହେବ? ଧୈର୍ଯ୍ୟ ଧର ।" କରମଗୃଦ୍ଧ କହନ୍ତି ।

କରମଗୃଦ୍ଧଙ୍କ ଅବସ୍ଥାରେ କ୍ରମେ ଅବନତି ଘଟିଲା । ଦୁର୍ଯ୍ୟୋଧନର ଭୟ ହେଲା ଯେ ସେ ମରିଯିବେ । ସେ ପର୍ଯ୍ୟନ୍ତ ସେ ବାପାଙ୍କଠୁଁ କରଜ ନେଇଥିବା ଲୋକଙ୍କର ପୁରା ବିବରଣୀ ପାଇ ନଥିଲା । ତା'ଛଡ଼ା ବାପା ମରିଗଲେ କେହି କେହି ଲୋକ ଆଇନ୍ କାନୁନ୍‌ର ଆଶ୍ରା ନେଇ ତାକୁ ଟଙ୍କା ନ ଦେବାର ସମ୍ଭାବନା ମଧ୍ୟ ଥିଲା । କରମଗୃଦ୍ଧ ବଞ୍ଚିଥିଲେ ତାହା ସମ୍ଭବ ହେବ ନାହିଁ । କାରଣ କରମଗୃଦ୍ଧ ନିଜେ ସେ ବିଷୟରେ ସବୁ ଆଇନ କାନୁନ ଜାଣିଥିଲେ ।

ସେତିକିବେଳେ ଜଣେ ମହାତ୍ମା ତୀର୍ଥ ଭ୍ରମଣ ନିମନ୍ତେ ଦାକ୍ଷିଣାତ୍ୟ ଯିବା ବାଟରେ ଧର୍ମସାଗର ଗାଁରେ ଦିନଟିଏ ବିଶ୍ରାମ ନେଉଥିଲେ । ସେ ମହାତ୍ମାଙ୍କ ଖ୍ୟାତି ଗାଁ ଲୋକେ ଜାଣିଥିଲେ । ଲୋକେ ଯାଇ ତାଙ୍କଠାରୁ ନାନା ବିଷୟରେ ପରାମର୍ଶ



ଆଣୁଥାନ୍ତି । ଦୁର୍ଯୋଧନ ବି ଯାଇ ତା' ବାପାଙ୍କ ବେମାରି କଥା କହିଲା । ମହାତ୍ମା ସବୁ ଶୁଣି ଆଖି ବୁଜି ରହିଲେ ଓ ତା'ପରେ କହିଲେ, "ତୋ ବାପା ଜୀବନରେ ବହୁ ଅନ୍ୟାୟ କରିଛନ୍ତି । ସେ ଅନୁତାପ କରି କାଶୀ ଯାଆନ୍ତୁ । ବିଶ୍ୱନାଥଙ୍କୁ ଦର୍ଶନ କରି ସେଠାରେ ଗଙ୍ଗା ପାଣି ପିଅନ୍ତୁ । ଭଲ ହୋଇଯିବେ ।"

ଦୁର୍ଯୋଧନ ଯେତେବେଳେ କହିଲା କି 'କାଶୀ ଗଲାଭଳି ତାକତ୍ ତା' ବାପାଙ୍କର ନାହିଁ, ସେତେବେଳେ ମହାତ୍ମା କହିଲେ, "ତେବେ ତୁ ଯାଇ ଭକ୍ତିପୂତ ଚିତ୍ତରେ ବିଶ୍ୱନାଥଙ୍କୁ ପୂଜା କରି ଗଙ୍ଗାଜଳ ନେଇ ଆସି ତୋ ବାପାଙ୍କୁ ଦେ । ଫଳ ହେବ ।"

ଦୁର୍ଯୋଧନ କାଶୀ ଗଲା । ବହୁତ ବାଟ । ସେ ଯାଇ ପୂଜା ଅର୍ଚ୍ଚନା କରି ଗଙ୍ଗାସ୍ନାନ କରି ପାତ୍ରରେ ଗଙ୍ଗାଜଳ ଧରି ଗାଁକୁ ଫେରିବା ବେଳେ ବାଟ କମ୍ ପଡ଼ିବ ବୋଲି ଗୋଟିଏ ବଣରେ ପଶିଲା ।

ହଠାତ୍ ଗୋଟିଏ ପିଶାଚୁଣୀ ତା' ଆଗରେ ମୂର୍ତ୍ତିମାନ ହୋଇ ତାକୁ କହିଲା, "ଭୟ କରନାହିଁ । ମୁଁ ତୁମର ଅନିଷ୍ଟ ନୁହେଁ, ଇଷ୍ଟ କରିବାକୁ ଚାହେଁ ।"

"ମୁଁ ତ କାଶୀ ଯାଇ ଗଙ୍ଗାସ୍ନାନ ଓ ବିଶ୍ୱନାଥ ଦର୍ଶନ କରି ଗଙ୍ଗାଜଳ ଧରି ଫେରୁଛି । ତୁ ମୋତେ କ'ଣ ସାହାଯ୍ୟ କରିବୁ ?" ଦୁର୍ଯୋଧନ ଡରି ଯାଇଥିଲେ ବି ଧମକ ଦେବାର ଅଭିନୟ କଲା ।

"ମହାଶୟ, ତମର ପୁଣ୍ୟ ହେବ, ମୋତେ ମୁଠାଏ ଗଙ୍ଗାଜଳ ଦିଅ । ମୁଁ ପିଶାଚ ଜୀବନରୁ ମୁକ୍ତି ପାଇଯିବି ।" ପିଶାଚୁଣୀ କହିଲା ।

"ଯାଃ, ଯାଃ ।" କହି ଦୁର୍ଯୋଧନ ଚାଲିଯିବାକୁ ଲାଗିଲା ।

ପିଶାଚୁଣୀ ଦୁର୍ଯୋଧନ ଚାଲିଥିବା ମାଟି ଉପରୁ କିଛି ଧୂଳି ଉଠାଇ ନେଇ ନିଜ ମୁଣ୍ଡରେ ବୋଳି କହିଲା, "ଗଙ୍ଗାସ୍ନାନ ଓ ବିଶ୍ୱନାଥ ଦର୍ଶନ କରି ପୁଣି ଗଙ୍ଗାଜଳ ହାତରେ ଧରି ଫେରୁଥିବା ପୁଣ୍ୟାତ୍ମାଙ୍କ ପଦରଜ ହିଁ ମୋତେ ମୁକ୍ତି ଦେବ ।"



ଚାହୁଁ ଚାହୁଁ ସେ ପିଶାଚୁଣୀ ଗୋଟିଏ ନାରୀରେ ପରିଣତ ହୋଇଗଲା ଓ ଦୁର୍ଯୋଧନକୁ ନମସ୍କାର କରି ଚାଲିଗଲା ।

ଦୁର୍ଯୋଧନ ଆଉ କିଛି ବାଟ ଯାଇଛି, ଜଣେ ବଳବାନ ଲୋକ ତାକୁ ଭେଟିଲା । ସେ ଲୋକ ଗୋଟିଏ ଠେଲାଗାଡ଼ିରେ ଜଣେ ପିଲାକୁ ବସାଇଥାଏ । ଲୋକଟି ପଚାରିଲା, "ବାବୁ! ତମର କିଛି ଉପକାର କରିପାରେଁ ?"

ଦୁର୍ଯୋଧନ କହିଲା, "ମୁଁ ଗଙ୍ଗାସ୍ନାନ ଓ ବିଶ୍ୱନାଥ ଦର୍ଶନ କରି ଗଙ୍ଗାଜଳ ଧରି ଫେରୁଛି । ମୋର ସାହାଯ୍ୟ ଲୋଡ଼ା ନାହିଁ । ତମେ କିଏ ?"

"ବାବୁ, ମୁଁ ଜଣେ ଡାକୁ ଥିଲି । ମୋ ପାପ ଯୋଗୁଁ ମୋର ପୁଅ ଅଥର୍ବ ହେଲା । ବହୁ ଅନୁତାପ କଲିଣି । ଲୋକଙ୍କ ଅପକାର କରୁଥିଲି । ଏବେ ଉପକାର କରିବାକୁ ଚେଷ୍ଟା କରି ବୁଲୁଛି । ମୋ ପୁଅକୁ ମୁନ୍ଦାଏ ଗଙ୍ଗାଜଳ ଦିଅନ୍ତ ନାହିଁ ?" ଲୋକଟି ଏହା କହି ହାତ ବଢ଼ାଇ ଦିଅନ୍ତେ ଦୁର୍ଯୋଧନ ପାତ୍ରଟି ଘୁଞ୍ଚାଇ ନେଲା । ଫଳରେ କିଛି ପାଣି ତଳେ ପଡ଼ିଗଲା ।

ଲୋକଟି କାଢ ପକାଇ ପାଣିରେ ଭିଜି ଯାଇଥିବା ବାଲି ମୁଠାକ ଉଠାଇ ତା' ପୁଅ ଦେହରେ ବୋଳି ଦେଲା । ଆଶ୍ଚର୍ଯ୍ୟର କଥା, ପୁଅ ଠେଲାଗାଡ଼ିରୁ ଉଠି ପଡ଼ି ଚାଲିଯିବାକୁ ଲାଗିଲା ।

"ଆହା! ଭଗବାନ! ଏ ଦୃଶ୍ୟ ମୁଁ ଦେଖିଲି! ମୋର କି ଭାଗ୍ୟ!" କହି ଖୁସିରେ ଡାକୁ ନାଚିଗଲା । ଆଶ୍ଚର୍ଯ୍ୟ ହୋଇ ଦୁର୍ଯୋଧନ ସେ ଦୃଶ୍ୟ ଦେଖିଲା ।

"ଆପଣଙ୍କୁ ଧନ୍ୟବାଦ!" କହି ଲୋକଟି ଚାଲିଗଲା ।

ଦୁର୍ଯୋଧନ ଆନନ୍ଦରେ ଘରକୁ ଯାଇ ବାପା ଆଗରେ ସବୁ ଗପିଲା । "ବାପା! ମୋ ହାତରୁ ତମେ ଟଙ୍ଗାଜଳ ପିଇବା ମାତ୍ରେ ଭଲ ହୋଇଯିବ ।" ଏହା କହି ସେ ବାପାକୁ ପାଣି ପିଆଇ ଦେଲା ।

କରମଚାନ୍ଦ ପୁଅ କଥା ଶୁଣି ଖୁସି ହୋଇ ଯାଇଥିଲେ । ସେ ଆଖିବୁଜି ଅପେକ୍ଷା

କଲେ । ଉତ୍କଣ୍ଠିତ ଭାବରେ ଦୁର୍ଯୋଧନ ମଧ୍ୟ ଅପେକ୍ଷା କଲା ।

କିନ୍ତୁ କରମଚନ୍ଦଙ୍କ ଅବସ୍ଥାରେ ସାମାନ୍ୟ ପରିବର୍ତ୍ତନ ମଧ୍ୟ ହେଲା ନାହିଁ । ବରଂ ଅବସ୍ଥା ଆହୁରି ଖରାପ ହେଲା ।

କେଇଦିନ ପରେ ଦାକ୍ଷିଣାତ୍ୟରେ ତୀର୍ଥ ଭ୍ରମଣ ଶେଷ କରି ମହାତ୍ମା ସେହି ଗାଁ ଦେଇ ଫେରୁଥିଲେ । ଦୁର୍ଯୋଧନ ତାଙ୍କୁ ଭେଟିଲା ଓ ସବୁ କଥା କହି ପଚାରିଲା, "ମହାତ୍ମା! ମୋ ପାଦଧୂଳି ନେଇ ପିଶାଚୁଣୀ ତା' ମଣିଷ ରୂପ ଫେରି ପାଇଲା, ଗଙ୍ଗାଜଳରେ ଓଦା ମାଟି ଦେହରେ ବୋଳି ପଙ୍ଗୁ ଭଲ ହୋଇଗଲା । ଅଥଚ ବାପା ସେ ଜଳ ପିଇ ମଧ୍ୟ ଭଲ ହେଉ ନାହାନ୍ତି କିପରି ?"

ମହାତ୍ମା ଧ୍ୟାନ କରି କହିଲେ, "ତୋ ବାପା ମନରେ ଅନୁତାପ ନାହିଁ କି ତୋ' ମନରେ ତାଙ୍କ ପ୍ରତି ନିର୍ମଳ ଶୁଭେଚ୍ଛା ନାହିଁ । ସେ ଯେ ଆଜୀବନ ଅନେକ ପାପ କରିଛନ୍ତି, ସେକଥା ବୁଝୁ ନାହାନ୍ତି । ତୁ ଯେ ସେ ବଞ୍ଚି ରହନ୍ତୁ ବୋଲି ଚାହୁଁ, ତାହା ତୋ ନିଜ ସ୍ୱାର୍ଥ ପାଇଁ । ଗଙ୍ଗାଜଳ ଏ କ୍ଷେତ୍ରରେ କାମ କରିବ ନାହିଁ ।"

ପରଦିନ କରମଚନ୍ଦ ଦେହ ତ୍ୟାଗ କଲେ ।

ତେବେ ଏ ଘଟଣା ଦୁର୍ଯୋଧନର ମତିଗତି ବଦଳାଇ ଦେଲା । ବାପା ସଞ୍ଚିଥିବା ଅଧର୍ମ ବିତ୍ତର ବହୁଳାଂଶ ସେ ଦୁଃସ୍ଥ ମାନଙ୍କୁ ବିତରଣ କରିଦେଲା । ତେଣିକି ସେ ଋଣଦାନ ବ୍ୟବସାୟ କଲା ସତ, କିନ୍ତୁ ନ୍ୟାୟ ପୂର୍ବକ କଲା ଓ ବିବେକ ଖଟାଇ ପ୍ରକୃତରେ ଅଭାବଗ୍ରସ୍ତ ଲୋକଙ୍କୁ ସୁଧ ଛାଡ଼ି ଦେବାକୁ ଲାଗିଲା ।

ଦୁଇବର୍ଷ ପରେ ମହାତ୍ମା ପୁଣି ସେ ରାସ୍ତାରେ ଗଲାବେଳେ ଦୁର୍ଯୋଧନକୁ ଆଶୀର୍ବାଦ ଦେଇ କହିଲେ, "ପୁଅ, ଯେ କୌଣସି ବ୍ୟବସାୟକୁ ସାଧୁ ମାର୍ଗରେ କରାଯାଇ ପାରେ । ଅସାଧୁ ମାର୍ଗ ନ ଧରିଲେ ବେପାର ଚାଲିବ ନାହିଁ, ଏହା ମଣିଷକୁ ପିଶାଚର ପରାମର୍ଶ !"





# ସର୍ତ୍ତ

ରତ୍ନପୁରର ରାଜା ଅଶୋକ ସିଂହଙ୍କ ଦରବାରରେ ଥିଲେ ଜଣେ ବିଦୂଷକ । ସେ ଯେ ଖାଲି ରାଜାଙ୍କୁ ହସାଇ ହସାଇ ବେଦମ୍ କରିପାରୁଥିଲେ, ସେତିକି ନୁହେଁ, ସେ ନାନା ବିଷୟରେ ରାଜାଙ୍କୁ ମନ୍ତ୍ରଣା ଦେଉଥିଲେ ଓ ରାଜା ତାହା ଦ୍ୱାରା ବହୁତ ଲାଭବାନ ହେଉଥିଲେ ।

ରାଜାଙ୍କର ବିଦୂଷକ ଉପରେ ବହୁତ ଆସ୍ଥା ଥିଲା । ତେଣୁ ବହୁତ ଲୋକ ସେମାନଙ୍କ ବିଷୟରେ ରାଜାଙ୍କ ପାଖରେ ସୁପାରିଶ୍ କରିବା ନିମନ୍ତେ ବିଦୂଷକଙ୍କ ଉପରେ ଚାପ ପକାଉଥିଲେ । କିନ୍ତୁ ବିଦୂଷକ ନିଜ ସ୍ୱାର୍ଥ ସକାଶେ କିମ୍ବା କାହାକୁ ଖୁସି କରିବା ନିମନ୍ତେ କେବେହେଲେ ରାଜାଙ୍କୁ ଅନ୍ୟାୟ ଅନୁରୋଧ କରୁନଥିଲେ ।

ରତ୍ନପୁର ରାଜ୍ୟର ଗୋଟିଏ ଦୂର ଗାଁରେ ବିଦୂଷକଙ୍କ ଶ୍ୱଶୁର ଘର । ବିଦୂଷକଙ୍କର ଜଣେ ବୋଲ ଶଳା ଭିନ୍ନ ଏକ ରାଜ୍ୟରେ ଚାକିରି କରୁଥିଲା । ତା' ନାମ ଜୟ ।

ଜୟର ବାପା ଅସୁସ୍ଥ ହୋଇ ପଡ଼ିବାରୁ ଜୟ ରତ୍ନପୁର ଆସିଲା । ବାପାଙ୍କ ମୃତ୍ୟୁ ହେଲା । ସମସ୍ତେ କହିଲେ ଜୟ ଆଉ ବିଦେଶ ନଯାଇ ରତ୍ନପୁରରେହିଁ ରହିଲେ ଭଲ ହେବ ।

"ରତ୍ନପୁରରେ ରହିବି ଯେ, କିନ୍ତୁ ରାଜଦରବାରରେ କିଛି ଚାକିରି ବାକିରି ମିଳିବ ?" ଜୟ ତା' ଭିଣୋଇ ବିଦୂଷକଙ୍କୁ ପଚାରିଲା ।

ବିଦୂଷକ ଏଭଳି ରୋକ୍‌ଠୋକ୍ ପ୍ରଶ୍ନ ଶୁଣି ପ୍ରଥମେ ନ ଶୁଣିଲା ଭଳି ରହିଲେ ।

"କ'ଣ ଭଗ୍ନୀପତି ମହୋଦୟ, ମୋ ପ୍ରଶ୍ନ ଏଡ଼ାଇଗଲ କାହିଁକି ? ରାଜଦରବାରରେ ଯଦି ନିଯୁକ୍ତି ମିଳେ, ତେବେ ଯାଇ ମୁଁ ଏ ରାଜ୍ୟରେ ରହିବାର ପ୍ରଶ୍ନ ଉଠିବ, ନହେଲେ ନୁହେଁ । କ'ଣ ରାଜାଙ୍କ ସହ ମୋର ଭେଟ କରାଇ

ଶଙ୍କର

ଦେବଟି ? ବାକି ଯାହା କରିବା କଥା ମୁଁ କରିବ । ମୋର ପଦେ ମଧ୍ୟ ପ୍ରଶଂସା ରାଜାଙ୍କ ଆଗରେ କରିବା ଦରକାର ନାହିଁ । ଖାଲି ଗୋଟାଏ ନିର୍ଦ୍ଦିଷ୍ଟ ସମୟରେ ମୋତେ ନେଇ ରାଜାଙ୍କ ପାଖରେ ପହଞ୍ଚାଇ ଦେବା ଦରକାର । ସେ ନିର୍ଦ୍ଦିଷ୍ଟ ସମୟ କେତେବେଳେ, ସେକଥା ମୁଁ ଅନୁସନ୍ଧାନ କରି ତମକୁ କହିବ । ରାଜି ?" ଜୟ ପଚାରିଲା ।

ବିଦୂଷକ କିଛି କହିପାରିଲେ ନାହିଁ । ଜୟର ଦକ୍ଷତା ସମ୍ପର୍କରେ ତାଙ୍କର କୌଣସି ଧାରଣା ନଥିଲା । ଜୟ ସେଉଠୁ ତାଙ୍କୁ ଗୋଟିଏ ସର୍ତ୍ତ ଦେଲା । ସେ ସର୍ତ୍ତ ଅଦ୍ଭୁତ । ଜୟ କହିଲା, "ମୁଁ ଯାହା କହିଲି, ସେଥିରେ ଯଦି ସଫଳ ହେବ, ତେବେ ଯାଇ ତମେ ରାଜାଙ୍କୁ କହିବ ମୋତେ ଚାକିରି ଦେବା ପାଇଁ, ନହେଲେ ନୁହେଁ । ହେଲା ?"

ବିଦୂଷକ ରାଜି ହେଲେ ।

ପରଦିନ ବିଦୂଷକ ଜୟକୁ ଦରବାରକୁ ନେଇଗଲେ । ସେ ରାଜାଙ୍କ ସହ ଜୟକୁ ପରିଚିତ କରାଇଦେବା ବେଳକୁ ରାଜାଙ୍କ ପାଇଁ ମସଲାବାଲା ଦୁଧ ଆସିଲା । ରାଜା ଠିକ୍ ପିଇବାକୁ ଯାଉଛନ୍ତି, ଜୟ କହିଲା, "ହଜୁର କ'ଣ ମୁହଁରେ ଦୁଧ ପିଅନ୍ତି ?"

ରାଜା ଆଶ୍ଚର୍ଯ୍ୟ ଓ ବିରକ୍ତ ହୋଇ ପଚାରିଲେ, "ଆଉ କ'ଣ ନାକରେ ବା ଆଖିରେ ବା କାନରେ ପିଅନ୍ତି ?"

"ମୁଁ ଭାବିଥିଲି ଆପଣ ମୋ ଭଳି ଆଖିରେ ପିଉଥିବେ ବୋଲି ।" ଜୟ କହିଲା ।



ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତମେ ଆଖିରେ ଦୁଧ ପିଇଯିବ? ସତ କଥା? ଯଦି ନ ପାରିବ?"

"ମହାରାଜ! ଯଦି ପାରିବ?" ଜୟ ପଚାରିଲା।

"ସହସ୍ର ସ୍ୱର୍ଣ୍ଣମୁଦ୍ରା ଦେବ। ଯଦି ନ ପାରିବ?" ରାଜା ପଚାରିଲେ।

"ମହାରାଜ, ମୁଁ ବା କ'ଣ ଦେଇ ପାରିବ? ମୋଠିଁ ଗୋଟିଏ ମାତ୍ର ଟଙ୍କା ଅଛି। ସେତକ ଦେବ।" ଜୟ କହିଲା।

ସଭାଯାକର ଲୋକ ଗଭୀର କୌତୁହଳ ଓ ବିସ୍ମୟରେ ଅନାଇ ରହିଲେ। ରାଜାଙ୍କ ଆଡ଼କୁ ଅନାଇ ଖୁବ୍ ନମ୍ର ଭାବରେ ଜୟ ପୁଣି କହିଲା, "ଆପଣଙ୍କର କ'ଣ ଅଭାବ ଯେ ସେ ମୋ ସର୍ତ୍ତରେ ରାଜି ନହେବେ?"

ରାଜା ଦୁଧ ଗିଲାସ ତା' ଆଡ଼େ ବଢ଼ାଇ ଦେଲେ। ଜୟ ସଙ୍ଗେ ସଙ୍ଗେ ଦୁଧତକ ମୁହଁ ଲଗାଇ ପିଇଦେଲା ଓ ଟଙ୍କାଟି ରାଜାଙ୍କୁ ଦେଇ କହିଲା, "ମହାରାଜ, ମୋର ହାର ହେଲା।"

ରାଜା ହସିଲେ। ଜୟ ବିଦୂଷକଙ୍କୁ ଅନାଇ କହିଲା, "ଏଥର କୁହ!"

ବିଦୂଷକ କହିଲେ, "ମହାରାଜ, ମୁଁ ଗୋଟିଏ ସମସ୍ୟାରେ ପଡ଼ିଛି। ମୋର ଏ ଶାଳକ ଗତକାଲି ମୋ ସହ ବାଜି ରଖିଥିଲେ କି ସେ ଖୋଦ୍ ରାଜାଙ୍କ ହାତରୁ ଟଙ୍କାଏ ବଦଳରେ ତାଙ୍କ ପାନୀୟ ନେଇ ସେ ପିଇ ପାରିବ। ମୁଁ କହିଥିଲି ସେ ଯଦି ଏହା ପାରିବ, ତେବେ ତାକୁ ଚାକିରି ଦେବା ପାଇଁ ମୁଁ ଆପଣଙ୍କ ଆଗରେ କହିବ। ବର୍ତ୍ତମାନ ସେ ସଫଳ।

ରାଜା ଏଥର ବହୁତ ହସିଲେ ଓ କହିଲେ, "ବିଦୂଷକ! ଜୟ ତମର ଯୋଗ୍ୟ ଶାଳକ। ବେଶ୍। ତାକୁ ଦରବାରରେ ଚାକିରି ଦିଆଯିବ।"

ଜୟ ଆନନ୍ଦରେ ରାଜାଙ୍କୁ ଜୁହାର ହେଲା।






[ ୧୪ ]

[ପ୍ରଥମେ ରାଜା ଚନ୍ଦ୍ରସେନ ନିଜ ପୁଅକୁ ନଦେଇ ଅନ୍ୟ ପିଲା ଦେଇ ରାକ୍ଷସ ଉଗ୍ରାକ୍ଷକୁ ଠକିବାକୁ ଚେଷ୍ଟା କରି ବ୍ୟର୍ଥ ହେଲେ । ଅବଶେଷରେ ସେ ନିଜ ପୁଅକୁହିଁ ଦେଇଦେଲେ । ଉଗ୍ରାକ୍ଷ ସେ ପିଲାର ନାମ ରଖିଲା ଉଗ୍ରଦତ୍ତ । ତା' ସହ ଖେଳିବା ସକାଶେ ସେ ଅନ୍ୟ ଦୁଇଟି ମଣିଷ ପିଲା ସଂଗ୍ରହ କରି ଆଣିଲା । ତା'ପରେ···]

ରାଜକୁମାର ଅମିତସେନଙ୍କୁ ରାକ୍ଷସ ଉଗ୍ରାକ୍ଷ ନେଇଯିବା ପରେ ରାଜମହଲରେ ବିଷାଦର ଛାୟା ଘୋଟି ରହିଲା । ଅମିତସେନ ଖାଲି ରାଜା ଚନ୍ଦ୍ରସେନଙ୍କର ସନ୍ତାନ ନୁହେଁ, ପ୍ରଥମ ସନ୍ତାନ । ପାଞ୍ଚବର୍ଷ ବୟସ ଯାଏ ସେ ପ୍ରାସାଦରେ ସୁଖରେ ଲାଳିତ ପାଳିତ ହୋଇଥିଲା । ରାଜା ଉଗ୍ରାକ୍ଷକୁ ଦେଇଥିବା ପ୍ରତିଶ୍ରୁତି କଥା କେହି ମନେରଖି ନଥିଲେ । ଶିଶୁ ରାଜକୁମାରଙ୍କ ପ୍ରତି ସମସ୍ତଙ୍କର ଗାଢ଼ ସ୍ନେହ ମମତା ଜନ୍ମିଥିଲା । ତେଣୁ ସମସ୍ତେ ଦୁଃଖିତ ହେବା ବାସ୍ତବିକ ।

ରାକ୍ଷସପୁରୀରେ ଅମିତସେନଙ୍କ ନାମ ହେଲା ଉଗ୍ରଦତ୍ତ । ଉଗ୍ରଦତ୍ତଙ୍କ ଲାଳନ ପାଳନରେ କୌଣସି ତ୍ରୁଟି ହେଲା ନାହିଁ । ଉଗ୍ରାକ୍ଷର ରାକ୍ଷସ




ଅନୁଚରମାନେ ରାଜକୁମାରଙ୍କ ସହ ଖେଳିବା ନିମନ୍ତେ ଯେଉଁ ଶିଶୁ ଦୁଇଟିଙ୍କୁ ଚୋରାଇ ଆଣିଲେ, ସେମାନଙ୍କ ନାମ ରଖାଗଲା ରୁଦ୍ର ଓ ଅରୁଦ୍ର । ଏ ତିନି ବାଳକ ଅନ୍ୟ ରାକ୍ଷସ ବାଳକମାନଙ୍କ ସହ ବଢ଼ିବାକୁ ଲାଗିଲେ । ରାକ୍ଷସମାନେ ଏ ତିନିଜଣଙ୍କୁ ବିଶେଷ ଯତ୍ନ କରୁଥିଲେ ।

ଚାହୁଁ ଚାହୁଁ ପନ୍ଦର ବର୍ଷ ବିତିଗଲା । ଉଗ୍ରାକ୍ଷ ବର୍ତ୍ତମାନ ନିଜ ଯୋଜନା କାର୍ଯ୍ୟକାରୀ କରିବାରେ ମନ ଦେଲା । ସେ ରାକ୍ଷସ ଜାତିକୁ ସଭ୍ୟ କରିବାକୁ ଚାହୁଁଥିଲା । ସେମାନଙ୍କୁ ସେ କୃଷି ବିଦ୍ୟା ଶିଖାଇଲା । ସେମାନେ ହଳ କରିବା ନିମନ୍ତେ ବଳଦ ଓ ମହିଷ ଆଣାଇଲା । କିନ୍ତୁ ରାକ୍ଷସମାନେ ସେସବୁ ଜୀବଙ୍କ ଦ୍ୱାରା ହଳ କରିବା ସୁବିଧା ମଣିଲେ ନାହିଁ । ସେଉଠୁ ହାତୀମାନଙ୍କ ଦ୍ୱାରା ସେମାନେ ହଳ କଢ଼ିବାର ବ୍ୟବସ୍ଥା ହେଲା ।

ଉଗ୍ରାକ୍ଷ ଦ୍ୱାରା ଅନୁପ୍ରାଣିତ ହୋଇ ରାକ୍ଷସମାନେ ନାନା ଭାବରେ ମଣିଷଙ୍କ ଭଳି ସାମାଜିକ ଜୀବନ ଯାପନ କରିବାର ଉଦ୍ୟମ କଲେ । ବଣ ମୂଲକରେ ବାସ କରୁଥିବା ମଣିଷମାନେ ଏହା ଦେଖି ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ଆନନ୍ଦିତ ହେଲେ । ରାକ୍ଷସମାନେ ଖାଲି ପଶୁମାନଙ୍କୁ ଧରି ଖାଉଥିଲେ, ତାହା ନୁହେଁ; ଅକାଳେ ସକାଳେ ମଣିଷଙ୍କୁ ବି ଉଠାଇନେଇ ଯାଉଥିଲେ ଓ ମଣିଷ ମାଂସ ଖାଉଥିଲେ । ସେମାନେ ଗୃହ ବାସରେ ମନ ଦେବା ଦ୍ୱାରା ମଣିଷମାନେ ନିଜ ନିଜକୁ ନିରାପଦ ମଣିଲେ ।

କ୍ରମେ ରାକ୍ଷସମାନେ ବଣ ଭିତରେ ସରୋବର ଓ ଉଦ୍ୟାନମାନ ପ୍ରସ୍ତୁତ କଲେ । ସେ ଅଞ୍ଚଳ ଶୋଭାମୟ ହେଲା ।

ସେତେବେଳକୁ ଉଗ୍ରଦଣ୍ଡ, ରୁଦ୍ର ଓ ଅରୁଦ୍ରଙ୍କ ବୟସ କୋଡ଼ିଏ । ସେମାନେ ସୁଠାମ ଓ ବଳବାନ ଯୁବକ ଭାବରେ ଘୋଡ଼ାଚଢ଼ା, ଧନୁର୍ବିଦ୍ୟା, ଅସିଚାଳନା ଇତ୍ୟାଦିରେ ଧୁରନ୍ଧର ହୋଇ ଉଠିଲେ । ସେମାନଙ୍କ ଭିତରେ ମଣିଷ ଗୁଣ ସାଥିକୁ ରାକ୍ଷସ ସୁଲଭ ବଳ ଓ ସାହସର ବିକାଶ ହେଲା ।

ଏରେ ସେମାନେ ଉଗ୍ରାକ୍ଷଠାରୁ ଶୁଣିଲେ କପରି ସେମାନଙ୍କ ଜନ୍ମ ପୂର୍ବରୁ ବ୍ୟାଘ୍ରଚର୍ମଧାରୀ ଲୋକେ ଆସି କପିଳପୁର ରାଜ୍ୟରେ ବିଭ୍ରାଟ ସୃଷ୍ଟି କରିଥିଲେ। ବ୍ୟାଘ୍ରଚର୍ମଧାରୀଙ୍କ ବିଷୟରେ ସେ ତିନି ଯୁବକଙ୍କ ମନରେ ଅଦମ୍ୟ କୌତୁହଳର ସୃଷ୍ଟି ହେଲା। ସେ ଲୋକେ କପରି ଅଦ୍ଭୁତ ପକ୍ଷୀମାନଙ୍କୁ ବଶ କରି ଏତେ ବିଭ୍ରାଟ ସୃଷ୍ଟି କଲେ, ସେକଥା ଉଗ୍ରଦତ୍ତ, ରୁଦ୍ର ଓ ଅଗ୍ନିରୁଦ୍ର ବୁଝି ପାରିଲେ ନାହିଁ। ଉଗ୍ରାକ୍ଷ ନିଜେ ଯାହା ଯେତିକ ଜାଣିଥିଲା, ସେସବୁ କହିଲା, କିନ୍ତୁ ପୁରାପୁରି ସେମାନଙ୍କ କୌତୁହଳ ଦମନ କରିପାରିଲା ନାହିଁ।




ଉଗ୍ରାକ୍ଷ କହିଲା, "ଆଜି ବି ସେମାନେ ଭୟଙ୍କର ପକ୍ଷୀମାନଙ୍କ ଉପରେ ସବାର୍ ହୋଇ ମଧ୍ୟେ ମଧ୍ୟେ ଆମ ଜଙ୍ଗଲ ଉପରେ ରାତିରେ ଦେଖା ଦିଅନ୍ତି। ଅବଶ୍ୟ ନିକଟ ଅତୀତରେ ସେମାନେ କୌଣସି ଉପଦ୍ରବ କରି ନାହାନ୍ତି। ନାଗବର୍ମା ଓ କରବୀର ନାମକ ଦୁଇଜଣ ସେମାନଙ୍କ ନେତା ଥିଲେ। କପିଳପୁର ରାଜ୍ୟ ସହ ଯୁଦ୍ଧରେ ପରାସ୍ତ ହୋଇ ସେ ଦୁହେଁ ପ୍ରାୟ ଧରା ପଡ଼ିବାକୁ ଯାଉଥିଲେ, ଦୈବାତ୍ ଖସିଗଲେ। କୁଆଡ଼େ ଗଲେ ଆମେ ଆଉ ଜାଣୁନା।"

ଉଗ୍ରାକ୍ଷର ଏ ବିବରଣୀ ଉଗ୍ରଦତ୍ତଙ୍କ କୌତୁହଳ ଆହୁରି ବଢ଼ାଇ ଦେଲା। ଦ୍ରୋହୀ ନାଗବର୍ମା ତଥା ତା' ଅନୁଚର କରବୀର ଗଲେ କୁଆଡ଼େ? ସେ ବିଷୟରେ ଯଥା ସମ୍ଭବ ଜାଣିବା ସକାଶେ ସେ ମନେ ମନେ ଦୃଢ଼ ସଂକଳ୍ପ ହେଲେ। କିଏ କହିବ ଯେ ସେ ଦୁହେଁ ଏ ପର୍ଯ୍ୟନ୍ତ ରାଜ୍ୟର ହାନି ପାଇଁ ଷଡ଼ଯନ୍ତ୍ର କରୁ ନାହାନ୍ତି? ବହ୍ନି ଦ୍ୱୀପର ଅଧିବାସୀ ଓ ସେ ଭୟଙ୍କର ପକ୍ଷୀମାନେ ଯେ ମଧ୍ୟେ ମଧ୍ୟେ ଦେଖା ଦିଅନ୍ତି, ତା'ର ଅର୍ଥ ହେଲା, ସେମାନେ ଏ ପର୍ଯ୍ୟନ୍ତ ଏ ରାଜ୍ୟ ଉପରୁ ସେମାନଙ୍କ ଲୋଭ ବା ଆକ୍ରୋଶ ତ୍ୟାଗ କରିନାହାନ୍ତି।

ଉଗ୍ରଦତ୍ତ ନିଜ ସାଥି ରୁଦ୍ର ଓ ଅଗ୍ନିରୁଦ୍ରଙ୍କ ସହ ପରାମର୍ଶ କରି ଗୋଟିଏ ଯୋଜନା ପ୍ରସ୍ତୁତ



କଲେ । ଗଡ଼ରେ କେବେ କେବେ ଏ ରାଜ୍ୟକୁ ଆସୁଥିବା ବହ୍ନି ଦ୍ୱୀପ ନିବାସୀଙ୍କ ଭିତରୁ କୌଣସି ମତେ ଜଣକୁ ଧରି ନେବା ହେଲା ସେମାନଙ୍କର ସେ ଯୋଜନାର ଉଦ୍ଦେଶ୍ୟ । ସେଭଳି ବନ୍ଦୀଠୁଁ ବହ୍ନି ଦ୍ୱୀପ ସମ୍ବନ୍ଧରେ ସବିଶେଷ ତଥ୍ୟ ଜାଣିହେବ । ସଙ୍ଗେ ସଙ୍ଗେ ନାଗବର୍ମା ଓ କରବୀର କୁଆଡ଼େ ଅଛନ୍ତି କ'ଣ କରୁଛନ୍ତି ସେକଥା ମଧ୍ୟ ବୁଝିହେବ ।

ସେ ତିନିହେଁ ଜାଣିଥିଲେ ଯେ ବଣ ମୂଲକରେ ରହୁଥିବା ମଣିଷ ଓ ରାକ୍ଷସଙ୍କ ସହଯୋଗ ବିନା ବହ୍ନି ଦ୍ୱୀପରୁ ଆସୁଥିବା ସେଭଳି ଲୋକଙ୍କୁ ବନ୍ଦୀ କରାଇ ହେବ ନାହିଁ । ଗୋଟିଏ ବଡ଼ ଧରଣର ପୁରସ୍କାର ଘୋଷଣା କଲେ ହୁଏତ ଲୋକେ ଓ ରାକ୍ଷସମାନେ ଜାଗ୍ରତ ହୋଇ ରହିବେ ଓ ପୁରସ୍କାର ଆଶାରେ ବିପଦର ଆଶଙ୍କା ସତ୍ତ୍ୱେ ସେ ଦୁର୍ଦ୍ଦାନ୍ତ ଲୋକଙ୍କୁ ଧରିବେ ।

ଉଗ୍ରଦତ୍ତ ଏ ବିଷୟରେ ଉଗ୍ରାକ୍ଷ ସହ ଆଲୋଚନା କଲେ । ଉଗ୍ରାକ୍ଷ ଏ ପ୍ରସ୍ତାବରେ ସମ୍ମତ ହେଲା । ତେଣୁ ଆଉ ବିଳମ୍ବ ନକରି ବଣ ମୂଲକ ସାରା ତଥା ଆଖପାଖର ଗାଁ ଗହଳ ଓ ପାହାଡ଼ ଘାଟି ମାନଙ୍କରେ ଘୋଷଣା କରାଗଲା କି ଯିଏ ଗୋଟିଏ ବ୍ୟାଘ୍ରଚର୍ମଧାରୀ ଲୋକକୁ ଧରିଦେଇ ପାରିବ, ସିଏ ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ପାଇବ । ଲୋକେ ଖୁବ୍ ଆଗ୍ରହରେ ଏ ଘୋଷଣା ଶୁଣିଲେ । ଏହା ପରେ ପ୍ରାୟ ସବୁଦିନ ସେ ବିଷୟରେ କିଛି ନା କିଛି ଖବର ସେମାନଙ୍କ ପାଖକୁ ଆସିବାକୁ ଲାଗିଲା । ବ୍ୟାଘ୍ରଚର୍ମଧାରୀ ଲୋକେ ଅଗ୍ନି ପକ୍ଷୀ ଆରୋହଣ କରି ଆକାଶମାର୍ଗରୁ ଯାହା ଦେଖିବାର ଦେଖି ଚାଲିଯାଉଛନ୍ତି, ଅବତରଣ କରୁ ନାହାନ୍ତି ।

ଉଗ୍ରଦତ୍ତଙ୍କ ମନରେ ନାନା ପ୍ରଶ୍ନ ଦେଖାଦେଲା । ବ୍ୟାଘ୍ରଚର୍ମଧାରୀମାନେ ରାଜ୍ୟରେ କିଭଳି ଉପଦ୍ରବ କରିବା ମତଲବ୍‌ରେ ଅଛନ୍ତି ? ଗଡ଼ରେ ବାରମ୍ବାର ଆସି କାହିଁକି ବୁଲି ଯାଉଛନ୍ତି ? ଲୋକଙ୍କ ଦୃଷ୍ଟିର ଅଗୋଚରରେ ବଣର କୌଣସି ଜନହୀନ ଅଞ୍ଚଳରେ ସେମାନେ ମଧ୍ୟେ ମଧ୍ୟେ ଓହ୍ଲାଉ ନାହାନ୍ତି

ତ ? ସେମାନଙ୍କ ବିଷୟରେ ଯେତିକ ସମ୍ବାଦ ମିଳିଲା, ତାହା ଆଶଙ୍କାକୁ ବଢ଼ାଇଦେଲା ସିନା, କୌଣସି ପ୍ରଶ୍ନର ଉତ୍ତର ଯୋଗାଇଦେଇ ପାରିଲା ନାହିଁ ।

ଉଗ୍ରଦତ୍ତ ନିଜେ ବଣ ଭିତରେ ରାତିରେ ଲୁଚି ରହି ସେମାନଙ୍କ ଗତିବିଧି ଲକ୍ଷ୍ୟ କରିବାକୁ ସ୍ଥିର କଲେ । ତାଙ୍କର ଏ ସିଦ୍ଧାନ୍ତ ଶୁଣି ରୁଦ୍ର ଓ ଅରୁଦ୍ର ମଧ୍ୟ ତାଙ୍କ ସହ ଯିବାକୁ ପ୍ରସ୍ତୁତ ହେଲେ ।

ଦିନେ ସନ୍ଧ୍ୟାବେଳେ ତିନିହେଁ ଦୁର୍ଗରୁ ବାହାରି ବଣ ଭିତରଦେଇ ଘୋଡ଼ାରେ ଅଗ୍ରସର ହେବାକୁ ଲାଗିଲେ । କ୍ରମେ ରାତି ଅଧାଅଧି ହେଲା, କିନ୍ତୁ ସେ ରାତିରେ ଅଗ୍ନିପକ୍ଷୀ ବା ବ୍ୟାଘ୍ରଚର୍ମଧାରୀ କେହି ସେମାନଙ୍କ ଆଖିରେ ପଡ଼ିଲେ ନାହିଁ । ତେବେ ସେମାନେ ହତାଶ ହେଲେ ନାହିଁ । ଯେ ପର୍ଯ୍ୟନ୍ତ ସେ ଆଗନ୍ତୁକମାନଙ୍କ ଭିତରୁ ଜଣେ ସେମାନଙ୍କ ହାତରେ ଧରା ନ ପଡ଼ୁଛି, ସେ ପର୍ଯ୍ୟନ୍ତ ସେମାନେ ଅନୁସନ୍ଧାନ ଚାଲୁ ରଖିବାକୁ ନିଷ୍ପତ୍ତି କଲେ ।

ସେତେବେଳକୁ ସେମାନେ କ୍ଳାନ୍ତ ହୋଇ ଗଲେଣି । ମନରେ ଉତ୍ସାହର ସିନା ଅଭାବ ନଥିଲା, କିନ୍ତୁ ବଣ ଭିତରେ ଘଣ୍ଟା ଘଣ୍ଟା ଧରି ବୁଲିବା ସହଜ କଥା ନୁହେଁ । ସେମାନେ ଗୋଟିଏ ଗଛ ମୂଳରେ କିଛି ସମୟ ବିଶ୍ରାମ କରି ଭୋର୍ ହେବା ବେଳକୁ ଦୁର୍ଗକୁ ଫେରିଯିବେ ବୋଲି ସ୍ଥିର କଲେ ।




ସେମାନେ ତିନୋଟି ଅଲଗା ଅଲଗା ଗଛ ଦେହରେ ସେମାନଙ୍କ ତିନି ଘୋଡ଼ାକୁ ବାନ୍ଧିଦେଲେ । ଯେଉଁ ଗଛ ମୂଳରେ ବିଶ୍ରାମ ନେବା କଥା, ସେ ଗଛ ମୂଳରେ ପହଞ୍ଚି ସେମାନେ ଦେଖିଲେ କି ଗଛ ଉପରେ ସତେ ଅବା ଆଲୁଅ ଜଳୁଛି ! ଉଗ୍ରଦତ୍ତହିଁ ପ୍ରଥମେ ଚପା କଣ୍ଠରେ କହିଲେ, "ଆରେ ! ଇଏତ ସେ ଭୟଙ୍କର ପକ୍ଷୀ ! ତା' ଉପରେ ବସିଥିବା ବ୍ୟାଘ୍ରଚର୍ମଧାରୀ ବ୍ୟକ୍ତିର ହାତରେ କୌଣସି ଜିନିଷ ରହିଛି, ଯେଉଁଥିରୁ ଆଲୁଅ ବାହାରୁଛି ।

ସେତେବେଳକୁ ରୁଦ୍ର ଓ ଅରୁଦ୍ରର ଦୃଷ୍ଟି ମଧ୍ୟ ସେ ପକ୍ଷୀ ଉପରେ ନିବଦ୍ଧ ହୋଇଥାଏ । ସେମାନେ ଲକ୍ଷ୍ୟ କଲେ, ପକ୍ଷୀଟି ପଶ୍ଚିମ



ଦିଗକୁ ଉଡ଼ି ଯାଉଛି । ସେ ଯିବା ବାଟ ଆଲୋକିତ ଦେଖା ଯାଉଛି ।

ରୁଦ୍ର କହିଲା, "ମୁଁ ଗଛ ଉପରେ ଚଢ଼ି ଆମେ ବର୍ତ୍ତମାନ କେଉଁ ମୁଲକରେ ଅଛୁଁ, ତାହା ଲକ୍ଷ୍ୟ କରି ଦେଖୁଛି ।"

ରୁଦ୍ର ଗଛ ଚଢ଼ି ଏକ ଧ୍ୟାନରେ କିଛି ସମୟ ସକାଶେ ଗୋଟାଏ ଦିଗକୁ ଅନାଇ ରହି ତା'ପରେ ତରତର ହୋଇ ତଳକୁ ଆସି ଉଗ୍ରଦତ୍ତ ଓ ଅରୁଦ୍ରକୁ କହିଲା, "ପଶ୍ଚିମ ଦିଗରେ ଗୋଟାଏ କିଲ୍ଲା ଥିବାର ଦେଖୁଛି । କିନ୍ତୁ ସେ କିଲ୍ଲା ଭିତରେ ଗୋଟିଏ ବି ଆଲୁଅ ଜଳୁନାହିଁ କି କିଲ୍ଲା ପ୍ରାଚୀର ବା ଛାତ ଉପରେ ଜଣେ ବି ପ୍ରହରୀ ନାହିଁ ।"

"ତମେ କ'ଣ ଭାବୁଛ ସେ ବ୍ୟାଘ୍ରଚର୍ମଧାରୀ ସେହି କିଲ୍ଲା ଭିତରେ ଅବତରଣ କରିଛି ?" ଉଗ୍ରଦତ୍ତ ପଚାରିଲେ ।

"ସେକଥା ଠିକ୍ କହି ହେବ ନାହିଁ । କିନ୍ତୁ ମନେ ହୁଏ ସେ ଏହି କିଲ୍ଲା ଭିତରେ, ନହେଲେ କିଲ୍ଲାର ଆଖପାଖରେହିଁ କେଉଁଠି ଓହ୍ଲାଇଛି । କିନ୍ତୁ ଆଶ୍ଚର୍ଯ୍ୟର କଥା ହେଲା କିଲ୍ଲା ଭିତରେ କେହି ଥିବାର କୌଣସି ଲକ୍ଷଣ ଦେଖାଯାଉନାହିଁ ।" ରୁଦ୍ର କହିଲା ।

ଉଗ୍ରଦତ୍ତ ଆଶ୍ଚର୍ଯ୍ୟ ହୋଇ ଭାବିଲେ, କିଲ୍ଲାଟି ତ ନିଶ୍ଚୟ କପିଳପୁରର କୌଣସି ସାମନ୍ତଙ୍କର ହୋଇଥିବ । ଏଭଳି ସାମନ୍ତ କିଏ ଯିଏ କି ନିଜ କିଲ୍ଲା ଉପରେ କୌଣସି ପ୍ରହରୀ ରଖିବ ନାହିଁ ? ସୂର୍ଯ୍ୟୋଦୟ ହେବା ମାତ୍ରେ କିଲ୍ଲା ପାଖକୁ ଯାଇ ଦେଖିବାକୁ ହେବ, ତା'ର ମାଲିକକୁ ସତର୍କ ରହିବା ସକାଶେ ଚେତାବନୀ ଶୁଣାଇ ଦେବାକୁ ହେବ ।

ଏହାପରେ ତିନିହେଁ ସେ ଗଛ ମୂଳରେ ଶୋଇ ପଡ଼ିଲେ ଓ ଅଳ୍ପ ସମୟ ଭିତରେ ନିଦ୍ରାଗଲେ । ସୂର୍ଯ୍ୟୋଦୟ ହେବା ବେଳକୁ ବଣର ପଶୁପକ୍ଷୀଙ୍କ କଣ୍ଠସ୍ୱର ସତ୍ତ୍ୱେ ସେମାନଙ୍କ ନିଦ ଭାଙ୍ଗିଲା ନାହିଁ । କିନ୍ତୁ ସେମାନଙ୍କର ତିନି ଘୋଡ଼ା ଯେତେବେଳେ ହ୍ରେଷାରବ କଲେ, ସେମାନେ ଚମକି ପଡ଼ି ଉଠି ବସିଲେ ।

ସେତେବେଳକୁ ଜଙ୍ଗଲ ସୂର୍ଯ୍ୟ କିରଣରେ ଆଲୋକିତ ହେଲାଣି । ପରେ ମାଙ୍କଡ଼

ଆଖପାଖର ଗଛ ଉପରେ ନାଚକୁଦ କରୁଥିଲେ ।

"ବଣର ଏ ଅଂଶ ଆମ ଅଞ୍ଚଳ ଅପେକ୍ଷା ସୁନ୍ଦର ମନେହୁଏ ।" ଉଗ୍ରଦତ୍ତ କହିଲେ ।

"ସେଇଥିପାଇଁ କୌଣସି ସାମନ୍ତ ରଜା ଏଠାରେ କଲ୍ଲା ବନାଇ ରହୁଛନ୍ତି ନିଶ୍ଚୟ ! ବ୍ୟାଘ୍ରଚର୍ମଧାରୀମାନେ ମଧ୍ୟ ଏ ଅଞ୍ଚଳକୁ ନିର୍ଜନ ଦେଖି ହୁଏତ ଏଠାରେ ଓହ୍ଲାଉଛନ୍ତି ।" ରୁଦ୍ର କହିଲା ।

ଉଗ୍ରଦତ୍ତ ଉଠି ଠିଆ ହେଲେ । ତାଙ୍କର ଦୁଇ ସାଥୀ ମଧ୍ୟ ସେଇଆ କଲେ । ଅରୁଦ୍ର ପଚାରିଲା, "କ'ଣ, ଘୋଡ଼ା ଖୋଲି ଆଣିବ ?"

"ଘୋଡ଼ା କ'ଣ ଦରକାର ? ରୁଦ୍ର, ଏଠାରୁ ସେ କଲ୍ଲା କେତେ ଦୂର ହେବ ?" ଉଗ୍ରଦତ୍ତ ପଚାରିଲେ ।

ରୁଦ୍ର କହିଲା, "ଅଧକୋଶ ହେବ ବୋଧହୁଏ ।"

"ତାହାହେଲେ ତ ଘୋଡ଼ା ଚଢ଼ି ଯିବା ଠିକ୍ ହେବ ।" କହିଲା ଅରୁଦ୍ର । ତିନିହେଁ ଯାଇ ଘୋଡ଼ାମାନଙ୍କୁ ଖୋଲୁଛନ୍ତି, ସେତିକି-ବେଳେ ହଠାତ୍ କୌଣସି ଆର୍ତ୍ତନାଦ ସେମାନଙ୍କ କାନରେ ପଡ଼ିଲା । ସେମାନେ ଆଶ୍ଚର୍ଯ୍ୟ ହେଲେ । ଆର୍ତ୍ତନାଦ କୌଣସି ନାରୀ କଣ୍ଠର ବୋଲି ମନେ ହେଲା ।

ଉଗ୍ରଦତ୍ତ ନିଜ ତରବାରି ବାହାର କଲେ । ଯେଉଁ ଦିଗରୁ ଆର୍ତ୍ତନାଦ ଆସୁଥିଲା, ତିନିହେଁ ସେହି ଦିଗକୁ ଦୌଡ଼ିଗଲେ । ଅଳ୍ପ ଦୂର ଯାଇ ସେମାନେ ଦେଖିଲେ ଜଣେ ସୁନ୍ଦରୀ ଝିଅକୁ ବ୍ୟାଘ୍ରଚର୍ମଧାରୀମାନେ ଧରିବାକୁ ଚେଷ୍ଟା କରୁଛନ୍ତି । ଝିଅ ସହ ଥିବା ଦୁଇଜଣ ପରିଚାରିକାହିଁ ଚିତ୍କାର କରୁଥିଲେ ।

"ଭୟ ନାହିଁ !" କହିଲେ ଉଗ୍ରଦତ୍ତ । ସଙ୍ଗେ ସଙ୍ଗେ ବ୍ୟାଘ୍ରଚର୍ମଧାରୀଙ୍କ ଦୃଷ୍ଟି ତିନି ଯୁବକଙ୍କ ଉପରେ ପଡ଼ିଲା । ସେମାନେ ତତ୍କ୍ଷଣାତ୍ ସେ ତିନିଜଣଙ୍କ ଉପରକୁ କୁଦି ପଡ଼ି ସେମାନଙ୍କୁ ଅକ୍ତିଆର୍ କରିନେଲେ ।

(କ୍ରମଶଃ)






# ବ୍ରହ୍ମରାକ୍ଷସୀର ବ୍ୟବହାର

ନିଶା ଗରଜୁଥାଏ । ଝୁହାଲୁ ଝୁହା ବର୍ଷା ହେଉଥାଏ । ସାଇଁ ସାଇଁ ଶୀତଳ ପବନ ବହୁଥାଏ । ଘଡ଼ଘଡ଼ ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍‌ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା! ତମେ ଏ ଘୋର ଦୁର୍ଯୋଗଭରା ରାତିରେ ଯେ ଏଭଳି କାମରେ ହାତ ଦେଇଛ, ଏହା ଅନ୍ୟର ଉପକାର ପାଇଁ ନା ନିଜର

## ବେତାଳ କଥା



ସ୍ୱାର୍ଥ ସାଧନ ପାଇଁ? ଏ ପ୍ରଶ୍ନର ଉତ୍ତର ଉପରେ ଅନେକ କିଛି ନିର୍ଭର କରେ। ଏ ଦୁଇ ଉଦ୍ଦେଶ୍ୟ ଭିତରେ ପାର୍ଥକ୍ୟ କ'ଣ ତାହା ବୁଝାଇଦେବା ନିମନ୍ତେ ତମକୁ ଗୋଟିଏ କାହାଣୀ କହୁଛି, ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲଘୁ ମନେ ହେବ।"

ବେତାଳ କହିଲା: "ଭରତପୁର ଗାଁରେ ହୋଲ ସିଂହ ନାମକ ଜଣେ କୃଷକ ଥିଲେ। ତାଙ୍କର ପ୍ରେମନାଥ ନାମକ ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ। ପ୍ରେମନାଥଙ୍କର ଆକସ୍ମିକ ଭାବରେ ପରଲୋକ ହୋଇଗଲା। ଏହାର କିଛିଦିନ ପରେ ପ୍ରେମନାଥଙ୍କ ସ୍ତ୍ରୀ ବି ପରଲୋକ ଗମନ କଲେ। ପଛରେ ଦୁହେଁ ସେମାନଙ୍କର ଏକମାତ୍ର ସନ୍ତାନ ସାଗରକୁ ଛାଡିଗଲେ। ସାଗରକୁ ସେତେବେଳେ ବୟସ ମାତ୍ର ଛଅ ସାତବର୍ଷ ହେବ।

ହୋଲ ସିଂହ ଅତି ସ୍ନେହରେ ସାଗରକୁ ନିଜ ଘରକୁ ନେଇ ପୁଅ ଭଳି ପାଳିଲେ। ହୋଲ ସିଂହ ସିନା ଜଣେ ସାଧାରଣ କୃଷକ ଥିଲେ, କିନ୍ତୁ ସେ ଥିଲେ ଅତ୍ୟନ୍ତ ନୀତିବାନ ଓ ସାହସୀ। ତାଙ୍କ ପ୍ରଭାବରେ ସାଗର ମଧ୍ୟ ସାହସୀ ହେବାର ଦେଖାଗଲା। ହୋଲ ସିଂହଙ୍କର କନ୍ୟାଟିଏ ଥିଲା। ସେ ତାକୁ ସାଗର ସହ ବିଭା ଦେବେ ବୋଲି ସ୍ଥିର କରିଥିଲେ ଓ ଏକଥା ସାଗର ଜାଣିଥିଲା।

ସେତେବେଳେ ସେ ଅଞ୍ଚଳରେ ରାଜ-ପ୍ରତିନିଧି ଥିଲେ ଗୈରିଧୁରି ସୁଖବୀର। ରାଜାଙ୍କ ସେନାପତି ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ। ସେହି ସାହସରେ ସୁଖବୀର ଯାହା ମନ ତାହା କରୁଥିଲେ। ପ୍ରଜାଙ୍କୁ ଶୋଷଣ କରିବା ଓ ସେମାନଙ୍କ ଉପରେ ଅତ୍ୟାଚାର କରିବା ତାଙ୍କ ଅଭ୍ୟାସରେ ପରିଣତ ହୋଇଥିଲା।

ସେତେବେଳେ ସାଗର ଯୁବକ। ଦିନେ ସେ ରାଜଧାନୀ ଯାଇ ରାଜାଙ୍କୁ ଭେଟି ସୁଖବୀର ବିରୁଦ୍ଧରେ ଅଭିଯୋଗ କରିବାର ନିଷ୍ପତ୍ତି ନେଲା। କିନ୍ତୁ ରାଜଧାନୀରେ ସେ ପ୍ରଥମେ ଯେଉଁ ଅମାତ୍ୟଙ୍କୁ ଏକଥା କହିଲା, ସେ ହେଲେ ସେନାପତିଙ୍କର ସଖା। ପରଦିନ ସେ ରାଜାଙ୍କ ସହ ଭେଟ କରାଇଦେବେ ବୋଲି ତାକୁ

କହିଲେ । କିନ୍ତୁ ପରଦିନ ସାଗର ରାଜାଙ୍କ ଆଗରେ ସୁଖିବାର ବିରୁଦ୍ଧରେ ଅଭିଯୋଗ କରିବାର ସୁଯୋଗ ପାଇବା ପୂର୍ବରୁ ସାଗର ନିଜେ ରାଜାଙ୍କ ଖଜଣାଖାନା ଲୁଣ୍ଠନ କରିବାର ଷଡ଼ଯନ୍ତ୍ର କରୁଛି ବୋଲି ଅଭିଯୋଗ ହେଲା । ରାଜା ସେତେବେଳେ ଅନ୍ୟ କୌଣସି କାରଣରୁ କୁପିତ ହୋଇ ରହିଥିଲେ । ସେ ସାଗରକୁ ନେଇ ହିଂସ୍ରଜନ୍ତୁ ପରିବେଷ୍ଟିତ ବଣରେ ବାନ୍ଧିଦେଇ ଆସିବାକୁ ହୁକୁମ ଦେଲେ ।



କର୍ମଚାରୀମାନେ ତାହାହିଁ କଲେ । ସାଗର ପ୍ରାଣର ଆଶା ତ୍ୟାଗ କରି ଠିଆ ହୋଇଥାଏ । ହଠାତ୍ ସେ ଶୁଣିଲା ଏକ ଆର୍ତ୍ତଧ୍ୱନି, "ମୋତେ ଭୀଷଣ ଶୋଷ, ଭୀଷଣ ଶୋଷ !"

ସାଗର ଅନାଇ ଦେଖିଲା, ଗୋଟିଏ ବ୍ରହ୍ମରାକ୍ଷସୀ ଠିଆ ହୋଇଛି । ନିର୍ଭୟରେ ସାଗର କହିଲା, "ପାଖରେ ନଈ । ତମେ ଯାଇ ପାଣି ପିଉନାହଁ କାହିଁକି ?"

"ଆରେ ପୁଅ । ମୋ ଉପରେ ଗୋଟିଏ ଅଭିଶାପ ଅଛି । ମୁଁ ଛୁଇଁବା ମାତ୍ରେ ନଈ ହେଉ ହ୍ରଦ ହେଉ ତାହା ଶୁଖିଯିବ । କେବଳ ଯଦି କେହି ମୋ ମୁହଁରେ ପାଣି ଢାଳି ଦେବ, ତେବେ ଯାଇ ମୋ ତୃଷା ମେଣ୍ଟିବ ।" ଏହା କହି ବ୍ରହ୍ମରାକ୍ଷସୀ ସାଗରକୁ ବନ୍ଧନମୁକ୍ତ କଲା ।

ସାଗର ଯାଇ ଗୋଟିଏ ମାଟି ସରରେ ପାଣି ଆଣି ବ୍ରହ୍ମରାକ୍ଷସୀକୁ ପିଆଇଲା । ତା'ପରେ ବ୍ରହ୍ମରାକ୍ଷସୀ ତାକୁ କାହିଁକି ଦଣ୍ଡ ମିଳିଛି ବୋଲି ପଚାରିବାରୁ ସେ ନିଜ ବାଲ୍ୟକାଳରୁ ଆଜିଯାଏ ଘଟିଥିବା ସବୁ ଘଟଣା ଗପିଗଲା ।"

ବ୍ରହ୍ମରାକ୍ଷସୀ ସବୁ ଶୁଣି କହିଲା, "ତୁ ଅନ୍ୟର ମଙ୍ଗଳ ପାଇଁ ବିପଦ ବରଣ କରିଛୁ । ତୋ ଭଳି ନିଃସ୍ୱାର୍ଥପର ସାହସୀ ଯୁବକକୁ ମୁଁ ସାହାଯ୍ୟ କରିବା ଉଚିତ ।"

ଏହା କହି ସେ ଶୂନ୍ୟରୁ ଧରି ଆଣିଲା ଖଣ୍ଡିଏ ଦୁର୍ମୂଲ୍ୟ ଶାଢ଼ୀ ଓ ବହୁତ ଗୁଡ଼ିଏ ହୀରା ଓ ସୁନାର ଅଳଙ୍କାର ।

"ଏସବୁ ରାଜକୁମାରୀଙ୍କର । ନିଜ ବୁଦ୍ଧି ଖର୍ଚ୍ଚ କରି ଏହା ଦ୍ୱାରା କପରି ସୁଖିବାର ବୁଦ୍ଧି ଶିଖିବ, ସେ ବ୍ୟବସ୍ଥା କର ।" ବ୍ରହ୍ମରାକ୍ଷସୀ ଏହା କହି ସେସବୁ ସାଗରକୁ ଧରାଇ ଦେଲା ।



ସାଗର ଅନ୍ଧାରରେ ସେସବୁ ଜିନିଷ ସୁଖବୀରର ଘର ଭିତରକୁ ଫୋପାଡି ଦେଲା । ସକାଳେ ସୁଖବୀରର ସ୍ତ୍ରୀ ସେସବୁ ଦେଖି ଅବାକ୍ ହେବା ସଙ୍ଗେ ସଙ୍ଗେ ବହୁତ ଖୁସି ବି ହେଲା । ସେ ସେସବୁ ପିନ୍ଧିବାର ଲୋଭ ସମ୍ବରଣ କରିପାରିଲା ନାହିଁ । ସେସବୁ ପିନ୍ଧି ସେ ଜଣେ ବନ୍ଧୁ ଘରେ ଉତ୍ସବରେ ଯୋଗ ଦେଲା । ରାସ୍ତାଘାଟରେ ଓ ଉତ୍ସବ ସ୍ଥାନରେ ଲୋକେ କାବା ହୋଇ ସେ ଦୁର୍ମୂଲ୍ୟ ବେଶଭୂଷା ଦେଖୁଥାନ୍ତି । ତେଣେ ସକାଳେ ରାଜାଙ୍କ ଉଆସରୁ ସେସବୁ ଚୋରି ହୋଇଥିବାର ଜଣା ପଡିବା ମାତ୍ରେ ଗୁପ୍ତଚରମାନେ ଏଣେ ତେଣେ ବଢେଇ ହୋଇ ପଡ଼ୁଥାନ୍ତି । ତାଙ୍କ ଭିତରୁ ଜଣେ ସୁଖବୀରର ସ୍ତ୍ରୀ ସେସବୁ ପିନ୍ଧିଥିବାର ଦେଖି ସଙ୍ଗେ ସଙ୍ଗେ ରାଜାଙ୍କୁ ଖବର ଦେଲା । ସିପାହୀମାନେ ଆସି ସୁଖବୀରକୁ ଗିରଫ କଲେ ଓ ଜିନିଷପତ୍ର ଜବତ କରି ନେଇଗଲେ ।

ସୁଖବୀରକୁ ବହୁତ ଦଣ୍ଡ ମିଳିଥାନ୍ତା । କିନ୍ତୁ ସେନାପତିଙ୍କ ହସ୍ତକ୍ଷେପ ଯୋଗୁଁ ସେ ବଞ୍ଚିଗଲା । ତେବେ ସେ ଆଉ ରାଜପ୍ରତିନିଧି ହୋଇ ରହିଲା ନାହିଁ ।

ନିଜ ପଦ ହରାଇବା ସଙ୍ଗେ ସଙ୍ଗେ ସୁଖବୀର ଦେଖିଲା ଯେ ସାଗର ନିଜପଦରେ ଫେରି ଆସିଛି । ସାଗର ଉପରେ ତା'ର କ୍ରୋଧ ହେଲା ଓ ନିଜ ବିପତ୍ତି ସହିତ ତା'ର କିଛି ସମ୍ପର୍କ ଅଛି ବୋଲି ସେ ସନ୍ଦେହ କଲା ।

କିଛିଦିନ ପରେ ରାଜ୍ୟରେ ଚୋରି ଡକାଏତି ଆରମ୍ଭ ହୋଇଗଲା । ସୁଖବୀର ଓ ସେନାପତି ପରାମର୍ଶ କରି ରାଜାଙ୍କୁ କହିଲେ, "ମହାରାଜ ! ଭରତପୁରର ସାଗର ନାମକ ଯୁବକ ଚୋର ଧରିବାର ମନ୍ତ୍ର ଜାଣେ, ଆପଣ ତାକୁ ଚୋର ଧରିବାର ଦାୟିତ୍ୱ ଦିଅନ୍ତୁ ।"

ରାଜା ସାଗରକୁ ଡକାଇ କହିଲେ, "ବାବୁ, ମୁଁ ଶୁଣିଲି ତମେ ଚୋର ଧରିବା ମନ୍ତ୍ର ଜାଣ । କିନ୍ତୁ ଜରୁର୍ ଧରିବାକୁ ପଡ଼ିବ । ସପ୍ତାହେ ସମୟ ଦେଲି । ଧରି ନପାରିଲେ ତମକୁ ଦଣ୍ଡ ମିଳିବ ।"

ସାଗର ପ୍ରମାଦ ଗଣିଲା, କିନ୍ତୁ ଦବିଗଲା-ନାହିଁ । ସେ ବଣ ଭିତରକୁ ଯାଇ ବ୍ରହ୍ମରାକ୍ଷସୀକୁ



ଭେଟି, ତା'ର ଦୁଃଖ ମେଣ୍ଟାଇ ସାରି ତା'ପରେ ନିଜ ସମସ୍ୟା କଥା କହିଲା ।

ବ୍ରହ୍ମରାକ୍ଷସୀ ସଙ୍ଗେ ସଙ୍ଗେ ଦୁଇଟି ବାଘ ଧରି ଆଣି କହିଲା, "ଏ ଦୁଇଟିଙ୍କୁ ସାଙ୍ଗରେ ନେଇ ଯା । ଡାକୁ ଧରା ପଡ଼ିଯିବେ ।"

ସାଗର ଡରିଗଲା । ସଙ୍ଗେ ସଙ୍ଗେ ବାଘ ଦୁଇଟି ଗୋଟିଏ ନବଦମ୍ପତି ପାଲଟିଗଲେ । ସାଗର ସେମାନଙ୍କୁ ସାଥିରେ ଧରି ବଣରୁ ବାହାରିଗଲା । ସେମାନଙ୍କ ଦେହସାରା ଅଳଙ୍କାରରେ ଭର୍ତ୍ତି ହୋଇଥାଏ । ରାତିରେ ତିନିହେଁ ଗୋଟିଏ ଚଟିଘରେ ରହିଲେ । ହଠାତ୍ ରାତିରେ ଦୁଇଜଣ ଡାକୁ ଘରେ ପଶି କନ୍ୟା ଦେହରୁ ଅଳଙ୍କାରତକ କାଢ଼ି ନେବାର ଚେଷ୍ଟା କଲେ । ତତ୍‌କ୍ଷଣାତ୍ ବର କନ୍ୟା ଦୁଇଟି ପ୍ରଚଣ୍ଡ ବାଘରେ ପରିଣତ ହେଲେ ଓ ଦୁଇ ଡାକୁଙ୍କୁ ଖଣ୍ଡିଆ ଖାବରା କରି ଦୌଡ଼ି ପଳାଇଲେ ।

ଆହତ ଡାକୁ ଦୁଇଜଣ ଏଭଳି ଭୟଭୀତ ହୋଇଯାଇଥାନ୍ତି ଯେ ସେମାନେ ସାରାଦିନ କଥା କହି ପାରିଲେ ନାହିଁ । ତା'ପରେ ନିଜର ରହସ୍ୟ ପ୍ରକାଶ କଲେ । ସେମାନଙ୍କୁ ସୁଖବୀର ଓ ସେନାପତି ନିଯୁକ୍ତ କରିଥିଲେ । ଏକଥା ଜାଣିବା ମାତ୍ରେ ରାଜା ସୁଖବୀର ଓ ସେନାପତିଙ୍କୁ ବନ୍ଦୀ କଲେ । ନୂଆ ସେନାପତି ଭାବରେ ନିଯୁକ୍ତ ହେଲା ସାଗର ।

ଏହାର କିଛିଦିନ ପରେ ରାଜ୍ୟରେ ଆସିଲା ଭୀଷଣ ବନ୍ୟା । ରାଜା ଚିନ୍ତିତ ହେଲେ । ଲୋକେ ହାହାକାର କଲେ । ସାଗର ମୁଣ୍ଡକୁ ଗୋଟିଏ ବୁଦ୍ଧି ଆସିଲା । ସେ ବଣକୁ ଯାଇ ବ୍ରହ୍ମରାକ୍ଷସୀକୁ ସବୁ କହିଲା । ବ୍ରହ୍ମରାକ୍ଷସୀ ତା' ସହ ଜନପଦକୁ ଆସି ବନ୍ୟାଜଳ ଛୁଇଁବା ମାତ୍ରେ ତାହା ଶୁଖିଗଲା ।

ସମସ୍ତେ ସାଗରକୁ ଧନ୍ୟ ଧନ୍ୟ କଲେ । ରାଜା ଏତେ ଖୁସି ହୋଇଗଲେ ଯେ ସେ ରାଜକନ୍ୟା ସହ ସାଗରର ବିଭା ଦେଇଦେଲେ ।

କିଛିଦିନ ଗଲା । ବ୍ରହ୍ମରାକ୍ଷସୀ କିପରି ଅଛି ଦେଖିବା ନିମନ୍ତେ ଦିନେ ସାଗର ବଣରେ ପ୍ରବେଶ କଲା । ବ୍ରହ୍ମରାକ୍ଷସୀ ତାକୁ ଦେଖି ମଧ୍ୟ ନ ଦେଖିଲା ପରି ରହିଲା । ସାଗର ପଚାରିଲା, "ତୁମକୁ ପିଇବା ପାଇଁ ପାଣି ଦେବି ?"

"ଦରକାର ନାହିଁ । ବରଂ ମୁଁ ଶୋଷରେ ରହିବି, ତୋ ଭଳି ବିଶ୍ୱାସଘାତକ ହାତରୁ ପାଣି ପିଇବି ନାହିଁ । ଯା, ପଳା! ଏଣିକି ମୋତେ ବି କୌଣସି ମଣିଷ ଆଉ ଦେଖିବେ ନାହିଁ ।" ଏହା କହି ସେ ଅଦୃଶ୍ୟ ହୋଇଗଲା ।

ସାଗର ନିସ୍ତବ୍ଧ ଭାବରେ ଠିଆ ହୋଇ ରହିଲା ଓ ତା'ପରେ ପ୍ରାସାଦକୁ ଫେରି ଆସିଲା ।

ମୁହୂର୍ତ୍ତେ ନୀରବ ରହି ବେତାଳ ଶବ କଣ୍ଠରେ ରାଜା ବିକ୍ରମାର୍କଙ୍କୁ ପ୍ରଶ୍ନ କଲା: "ରାଜା! ବ୍ରହ୍ମରାକ୍ଷସୀର ଏଭଳି ମତ-ପରିବର୍ତ୍ତନର କାରଣ କ'ଣ ହୋଇପାରେ? ସେ ତ ସର୍ବଦା ସାଗରକୁ ସାହାଯ୍ୟ କରୁଥିଲା । ଆଜି ସାଗରର କୌଣସି ମାଗୁଣି ନଥିବା ସତ୍ତ୍ୱେ ସେ ଏପରି କର୍କଶ ବ୍ୟବହାର କଲା କାହିଁକି? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ: "ସାଗର ଆଜିଯାଏ ଜନହିତକର କାର୍ଯ୍ୟ ପାଇଁ ବ୍ରହ୍ମରାକ୍ଷସୀର ସାହାଯ୍ୟ ପାଉଥିଲା । କିନ୍ତୁ ସେନାପତି ହେବା ପରେ ସେ ନିଶ୍ଚୟ ନିଜ କର୍ତ୍ତବ୍ୟ ଭୁଲିଗଲା ଓ ଯେଉଁ ପରିବାର ତାକୁ ମଣିଷ କରିଥିଲେ, ସେ ପରିବାରର ଅହିତ ହେଲାଭଳି କାମ କଲା । ଅର୍ଥାତ୍ ଭୋଳା ସିଂହଙ୍କର କନ୍ୟାକୁ ବିଭା ନହୋଇ ସେ ରାଜକନ୍ୟାକୁ ବିଭା ହେଲା । ବ୍ରହ୍ମରାକ୍ଷସୀ ତା' ବିଷୟରେ ସବୁ ଜାଣିଥିଲା । ତେଣୁ ସାଗରର ଏ ବ୍ୟବହାରକୁ ସେ ବିଶ୍ୱାସଘାତକତା ଆଖ୍ୟା ଦେଲା । ମଣିଷଙ୍କ ଉପରୁ ତା'ର ଆସ୍ଥା ତୁଟିଗଲା ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ଆପଣା ଲୋକ

ଲକ୍ଷ୍ମୀସାଗର ରାଜ୍ୟର ରାଜାଙ୍କର କେତେଗୁଡ଼ିଏ ଉଦ୍ୟାନ ଥିଲା । ଦିନେ ସେ ରାଜଧାନୀର ଗୋଟିଏ ପ୍ରାନ୍ତରେ ଥିବା ଗୋଟିଏ ବଡ଼ ଉଦ୍ୟାନକୁ ବୁଲିଗଲେ । ସେ ମଧ୍ୟେ ମଧ୍ୟେ ଏକାକୀ କୌଣସି ନା କୌଣସି ଉଦ୍ୟାନରେ ବୁଲିବାକୁ ଭଲ ପାଉଥିଲେ ।

ହଠାତ୍ ତାଙ୍କର ମନେ ହେଲା, ଗଛ ଗୁଡ଼ିକ ଝାଉଁଳି ପଡ଼ିଛନ୍ତି । ଯେଉଁ ଲତା ଅନ୍ୟ ଗଛ ବା କୌଣସି ଅବଲମ୍ବନ ଉପରେ ଭରଦେଇ ରହିବା କଥା, ସେ ଲତା ତଳେ ଲୋଟୁଛି । ରାଜା ସ୍ୱଭାବତଃ ଗଛଲତା ଫୁଲଫଳ ଖୁବ୍ ଭଲ ପାଉଥିଲେ ତେଣୁ ବଗିଚାର ଏ ଦୟନୀୟ ଅବସ୍ଥା ଦେଖି ଅତ୍ୟନ୍ତ ବ୍ୟଥିତ ହେଲେ ।

ସେ ମାଳୀକୁ ଡକାଇଲେ ଓ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତମକୁ ତ ମୁଁ କେବେ ଏ ଉଦ୍ୟାନରେ ଦେଖିନାହିଁ! ପୁରୁଣା ମାଳୀ କାହିଁ?"

"ମହାରାଜ! ସେ ବର୍ଷେ ହେବ ମଲେଣି । ତାଙ୍କ ପରେ ଛାମୁଙ୍କ ମୁଖ୍ୟ ଉଦ୍ୟାନରକ୍ଷକ ମୋତେ ଏଠି ନିଯୁକ୍ତ ଦେଇଛନ୍ତି ।" ଲୋକଟି କହିଲା ।

"ଏହା ପୂର୍ବରୁ ତମେ କ'ଣ କରୁଥିଲ?" ରାଜା ପଚାରିଲେ ।

"ମୁଁ ମୁଖ୍ୟ ଉଦ୍ୟାନରକ୍ଷକଙ୍କ ଘରେ ଚାକର ଥିଲି ଆଜ୍ଞା!" ଲୋକଟି କହିଲା ।

ରାଜା ଆଉ କିଛି ପଚାରିଲେ ନାହିଁ । ସେ ନଅରକୁ ଫେରିଯାଇ ସେହିଦିନ ସନ୍ଧ୍ୟାବେଳେ ତାଙ୍କର ପ୍ରଧାନ କର୍ମଚାରୀମାନଙ୍କୁ ଡାକି କହିଲେ, "ମୋର ଜଣେ ଦେହରକ୍ଷୀ ଲୋଡ଼ା । ସେ ଖାଲି ବଳବାନ୍ ହେଲେ ଚଳିବ ନାହିଁ, ସେ ପ୍ରତ୍ୟୁତ୍ପନ୍ନମତି, ବିବେକୀ

ସୁରେନ୍ଦ୍ର ନାଥ

ଓ ଅତ୍ୟନ୍ତ କର୍ତ୍ତବ୍ୟନିଷ୍ଠ ହେବା ଦରକାର । ଆପଣମାନେ ସେଭଳି କୌଣସି ଯୋଗ୍ୟ ଯୁବକ ଦେଖିଲେ ମୋତେ କହିବେ ।"

ତିନିଦିନ ଭିତରେ ସାତଜଣଯାକ ମୁଖ୍ୟ ଜଣେ ଜଣେ ଯୁବକଙ୍କୁ ଆଣି ରାଜାଙ୍କ ସହ ଭେଟ କରାଇଲେ । ରାଜା ସେ ଯୁବକମାନଙ୍କ ସହ ଜଣ ଜଣ କରି କଥାବାର୍ତ୍ତା କଲାବେଳେ ସେମାନଙ୍କୁ ଆଣିଥିବା ମୁଖ୍ୟମାନଙ୍କୁ ପାଖରେ ରହିବାକୁ ଦେଉ ନଥାନ୍ତି ।

ଚାରି ପାଞ୍ଚଦିନ ପରେ ରାଜା ସବୁ ମୁଖ୍ୟଙ୍କୁ ଡକାଇଲେ ଓ କହିଲେ, "ମୁଁ ବଡ଼ ବ୍ୟଥିତ ଓ ଚିନ୍ତିତ ।"

"କାହିଁକି ମହିମା ?" ମୁଖ୍ୟମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଦେହରକ୍ଷୀ ମୋର ଜୀବନରକ୍ଷା ପାଇଁ ଦାୟୀ ହେବାକଥା । ଅଥଚ ଆପଣମାନେ ଜଣେ ମଧ୍ୟ ସେ ଦୃଷ୍ଟିରୁ ସବୁଠୁଁ ଯୋଗ୍ୟ ଯୁବକ କିଏ, ସେ କଥା ଭାବିଲେ ନାହିଁ । ସାତଜଣ ଯୁବକଙ୍କୁ ପ୍ରଶ୍ନ କରି ମୁଁ ବୁଝିଲି, ଜଣେ ହେଲା ତାଙ୍କୁ ଆଣିଥିବା ମୁଖ୍ୟଙ୍କ ଶଳା; ଅନ୍ୟ ଜଣକ ତାଙ୍କୁ ଆଣିଥିବା ମୁଖ୍ୟଙ୍କ ପୁତୁରା; ତୃତୀୟ ଜଣଙ୍କର ବାପା ତାଙ୍କୁ ଆଣିଥିବା ମୁଖ୍ୟ ସହ ସବୁଦିନେ ପଶା ଖେଳନ୍ତି । ଚତୁର୍ଥ ଜଣକଠୁଁ ତାଙ୍କୁ ଆଣିଥିବା ମୁଖ୍ୟ ଖଣ୍ଡିଏ ଜମି କିଣିବାର ପ୍ରସ୍ତାବ ଅଛି । ଏହିପରି ଘବରେ ସାତଜଣଯାକ ଆସିଥିଲେ ଭିନ୍ନ ଭିନ୍ନ କାରଣରୁ । କେହି ମୁଁ କହିଥିବା ଗୁଣ ଯୋଗୁଁ ନୁହେଁ । ଯଦି ମୋ ନିରାପତ୍ତା ପ୍ରତି ଆପଣମାନଙ୍କର ମନୋଭାବ ଏଇଆ, ପ୍ରଜାଙ୍କ ସ୍ୱାର୍ଥ ପ୍ରତି ଆପଣମାନେ କେତେଦୂର ଧ୍ୟାନ ଦେଉଥିବେ ?" ରାଜା ପଚାରିଲେ ।

ସମସ୍ତେ ମୁଣ୍ଡ ତଳକୁ କରି ଠିଆ ହୋଇ ରହିଲେ । ରାଜା କହିଲେ, "ନିଜ ନିଜ ଚରିତ୍ର ଉପରେ ଦୃଷ୍ଟି ଦିଅନ୍ତୁ । ଏଣିକି ଯେ କୌଣସି ପଦ ପାଇଁ ରାଜ୍ୟରେ ଡେଙ୍ଗୁରା ଦିଆଯାଇ ସେପାଇଁ ଯୋଗ୍ୟତମ ବ୍ୟକ୍ତିଙ୍କୁ ନିଆହେବ ।"



ଭାରତର ଇମାରତ

# ଗୋଲ ଗୁମ୍ବଜ




କର୍ଣ୍ଣାଟକ ରାଜ୍ୟର ବିଜାପୁରରେ ଅବସ୍ଥିତ ଗୋଲ ଗୁମ୍ବଜ ଯାହାଙ୍କ ସମାଧି, ସେହି ଲୋକହିଁ ତାକୁ ନିର୍ମାଣ କରି ଯାଇଥିଲେ । ସେ ହେଲେ ମହମ୍ମଦ ଆଦିଲ୍ ଶାହ୍ । ଏ ଇମାରତ୍ ଅତି ସୁନ୍ଦର । ଏହାର ଗମ୍ବୁଜ ଏକ ଅଦ୍ୱିତୀୟ ଆକର୍ଷଣ ।




ବିଜାପୁରର ଆଦିଲ୍ ଶାହି ଶାସକ ବଂଶର ପ୍ରତିଷ୍ଠାତା ହେଲେ ୟୁସୁଫ୍ ଆଦିଲ୍ ଶାହ୍ । ସେ ଥିଲେ ତୁର୍କୀର ସୁଲତାନ୍ ମୁରାଦଙ୍କ କନିଷ୍ଠ ପୁତ୍ର । ସେ ଦେଶର ନିୟମ ଅନୁସାରେ ସୁଲ୍ତାନଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ କେବଳ ବଡ଼ ପୁଅକୁ ଛାଡି ଅନ୍ୟସବୁ ପୁଅଙ୍କୁ ଗୋପନରେ ହତ୍ୟା କରାହେବା କଥା ।

ଅତଏବ ୟୁସୁଫ ମଧ୍ୟ ମରିବା କଥା । ତାହାହେଲେ ଭବିଷ୍ୟତରେ ଗାଦି ପାଇଁ ବିପଦ ହେବ ନାହିଁ । କିନ୍ତୁ ୟୁସୁଫ୍‌ଙ୍କ ମାତାଙ୍କୁ ମନ୍ତ୍ରୀମାନେ ଯେତେ ବୁଝାଇଲେ ବି ସେ ସାନ ପୁଅକୁ ମୃତ୍ୟୁମୁଖକୁ ଠେଲିଦେବା ନିମନ୍ତେ ରାଜି ହେଲେ ନାହିଁ ।





ବେଗମ୍‌ଙ୍କର ଜଣେ ଅନୁଚର ହିନ୍ଦୁସ୍ଥାନ ଅଭିମୁଖେ ଯାଉଥିବା ଗୋଟିଏ ବଣିକଦଳକୁ ଭେଟିଲେ । ସେ ଦଳ ସହ ୟୁସୁଫ୍ ବୟସର ଦାସ ବାଳକଟିଏ ଥିଲା । ତାକୁ କିଣି ଆଣି କେଇ ଘଣ୍ଟା ପାଇଁ ରାଜପୁତ୍ର ଭଳି ଚର୍ଚ୍ଚା କରାଗଲା । ରାତିରେ ଆତତାୟୀଙ୍କ ହାତରେ ସେ ହେଲା ନିହତ ।

ୟୁସୁଫ୍ ମୃତ ବୋଲି ଘୋଷଣା କରାଗଲା । ପ୍ରକୃତରେ କିନ୍ତୁ ୟୁସୁଫ୍‌ଙ୍କୁ ହିନ୍ଦୁସ୍ଥାନ ପଠାଇ ଦିଆଗଲା । ସେହି ବଣିକ ଦଳର ନେତା ତା'ର ଦାୟିତ୍ୱ ନେଲେ ଓ ତାକୁ ଭଲ ଭାବରେ ଶିକ୍ଷା ଦୀକ୍ଷା ଦେଲେ ।






ଭାରତରେ ସେ କିଛି ବର୍ଷ ପରେ ବିଦାର ରାଜ୍ୟର ସୁଲତାନଙ୍କ ଦରବାରରେ ଚାକିରି ନେଲେ । ସେ ଚାକିରିରେ କ୍ରମେ ଉନ୍ନତି କରି କରି ବିଜାପୁରର ଶାସକ ପଦ ପାଇଲେ । ସେ ବଳ ସଞ୍ଚୟ କରି ୧୪୮୯ରେ ଆଦିଲ୍ ଶାହ୍ ପଦବୀ ଗ୍ରହଣ କରି ନିଜକୁ ସ୍ୱାଧୀନ ରାଜା ବୋଲି ଘୋଷଣା କରିଦେଲେ ।

ଆଦିଲ୍ ଶାହ୍ ବଂଶର ଶାସକମାନେ ଅନେକ ଇମାରତ୍ ନିର୍ମାଣ କରି ଯାଇଛନ୍ତି । ସେସବୁ ଭିତରୁ ଗୋଲ ଗୁମ୍ବଜ ସବୁଠାରୁ ବିଖ୍ୟାତ । ଏହାର ଗମ୍ବୁଜ ପୃଥିବୀରେ ଦ୍ୱିତୀୟ ବୃହତ୍ତମ ଗମ୍ବୁଜ । ଏହା ଭିତରେ ଥିବା 'ପ୍ରତିଧ୍ୱନି ମହଲ୍' ଏପରି ନିର୍ମିତ ଯେ ଜଣେ ତାଳି ବଜାଇଲେ ବହୁଲୋକ ବଜାଇଲା ଭଳି ଶୁଭିବ ।





ଜାମି ମସ୍‌ଜିଦ୍‌ ବିଜାପୁରର ଅନ୍ୟ ଏକ ପ୍ରସିଦ୍ଧ ଇମାରତ୍‌ । ସୁଲତାନ୍‌ ଆଲି ଆଦିଲ୍‌ ଶାହ୍‌ଙ୍କ ସମୟରେ ଏହାର ନିର୍ମାଣ ଆରମ୍ଭ ହୋଇଥିଲା । ଏ ମସ୍‌ଜିଦ ଭିତରେ ଏକ ସମୟରେ ୨୨୫୦ ଜଣ ପ୍ରାର୍ଥନା କରି ପାରିବେ । ଜଣ ଜଣ ବସିବା ପାଇଁ ଚଟାଣରେ କଳା ଗାର ଦ୍ୱାରା ସ୍ଥାନ ନିର୍ଦ୍ଦିଷ୍ଟ କରି ଦିଆଯାଇଛି ।

ବିଜାପୁରର ଇତିହାସରେ କେତେଥର କେତେ ଲଢ଼େଇ ହୋଇଛି ! ଆଜି ସେସବୁର ମୂକ ସାକ୍ଷୀ ରୂପେ ସହରର ପଶ୍ଚିମ ପ୍ରାଚୀର ଉପରେ 'ମାଲିକ୍‌-ଇ-ମଇଦାନ୍‌' ନାମକ ଗୋଟିଏ ବିଶାଳ କମାଣ ଦେଖିବାକୁ ମିଳେ ଏହା ଆଜି ଏକ ବିଶେଷ ଦର୍ଶନୀୟ ବସ୍ତୁ ଭାବରେ ପରିଗଣିତ ।





ସୁଲତାନ୍‌ଙ୍କର ଜଣେ ସେନାପତି ନିଜ ପାଇଁ ଗୋଟିଏ ସୁଦୃଶ୍ୟ ସମାଧି-ଇମାରତ୍‌ ନିର୍ମାଣ କରିଥିଲେ । କିନ୍ତୁ ସେ ତହିଁ ଭିତରେ ପୋତା ହୋଇ ପାରିଲେ ନାହିଁ । କାରଣ ସେ ଶିବାଜୀଙ୍କୁ ଏକାକୀ ଭେଟି ତାଙ୍କୁ ମାରିବାକୁ ଉଦ୍ୟତ ହେବା ବେଳେ ଶିବାଜୀ "ବାଘନଖ" ସାହାଯ୍ୟରେ ତାଙ୍କୁ ହତ୍ୟା କଲେ । ସେହି ଘଟଣା ସ୍ଥାନରେହିଁ ଏହାଙ୍କୁ ସମାଧି ଦିଆହେଲା ।



# ଆଶା ଓ ଉପହାର

ପାହାଡ଼ ତଳେ ଓ ନଈ କୂଳରେ ଗାଁଟିଏ ଥିଲା । ନାମ ସିଙ୍ଗପୁର । ସେଠିକାର ଜଳବାୟୁ ଖୁବ୍ ଭଲ । ଗାଁ ଲୋକେ ଯେମିତି ଗୃହବାସ କରୁଥିଲେ, ସେମିତି ପନିପରିବା ଓ ଫଳମୂଳ ମଧ୍ୟ ଉପୁଜାଉଥିଲେ ।

ଜଳବାୟୁ ଭଲ ବୋଲି ସହରରୁ ଧନୀ ଲୋକେ ମଧ୍ୟେ ମଧ୍ୟେ ସେଠାରେ ଆସି କିଛିଦିନ ରହୁଥିଲେ । ଗାଁର ଜଣେ ଦୁଇଜଣ ଧନୀ ଲୋକ ନଈ କୂଳରେ କେତୋଟି ଛୋଟ ଛୋଟ କୋଠି ବନାଇଥିଲେ । ଧନୀ ଆଗନ୍ତୁକମାନେ ସେ କୋଠି ଭଡ଼ାରେ ନେଉଥିଲେ ।

ଯେଉଁମାନେ ଖାଲି ନିର୍ଜନତା ଉପଭୋଗ କରିବାକୁ ଆସୁଥିଲେ, ସେମାନେ ଦୁଇ ଚାରିଦିନ ରହି ଚାଲିଯାଉଥିଲେ । ଯେଉଁମାନେ ନିଜ ନିଜ ସ୍ୱାସ୍ଥ୍ୟ ସୁଧାରିବା ନିମନ୍ତେ ଆସୁଥିଲେ, ସେମାନେ ପନ୍ଦରଦିନ ମାସେ ରହି ଯାଉଥିଲେ ।

ଗାଁରେ ନୀଳମଣି ନାମକ ଜଣେ ଗରିବ ଲୋକ ଥିଲା । ଏହିଭଳି ଅତିଥିମାନେ ଆସିଲେ ସେ ସେମାନଙ୍କ ବୋଲହାକ କରେ । କାହା ପାଇଁ ଗାଁରୁ ଦୁଧ ଆଣିଦିଏ ତ କାହା ପାଇଁ ଫଳମୂଳ ଆଣିଦିଏ । କୋଠି ସଫାସୁତୁରା କରିଦିଏ । ଅତିଥିମାନେ କିଛି କିଛି ପଇସା ଦିଅନ୍ତି, ପୁଣି ବିଦାୟ ନେଲାବେଳେ କିଏ ଲୁଗା ବା ବାସନ ତାକୁ ଦେଇଯା'ନ୍ତି । ଏମିତି ଭାବରେ ସେ ଚଳୁଥାଏ ।

ଥରେ ସୁଧାକରବାବୁ ବୋଲି ଜଣେ ଭଦ୍ରଲୋକ ଆସି ଗୋଟିଏ କୋଠିରେ ରହିଲେ । ନୀଳମଣି ତାଙ୍କ କାମଦାମ କରୁଥାଏ । ସୁଧାକରବାବୁ ତାକୁ ମଝିରେ ମଝିରେ ପଇସା-ପଦ ଦେଉଥାନ୍ତି ।

"ବାବୁ ବିଦାୟ ନେଇଗଲାବେଳେ ମୋତେ ଏମିତି କିଛି ଚିଜ ଦେଇଯିବେ, ଯାହା ଦ୍ୱାରା ମୁଁ




ତାଙ୍କୁ କେବେ ଭୁଲି ପାରିବ ନାହିଁ।" ନୀଳମଣି ସୁଧାକରବାବୁଙ୍କୁ ଶୁଣାଇ ସବେ ଅବା କାହାକୁ ସେକଥା କହୁଥାଏ। ସୁଧାକରବାବୁ ହସି ଦିଅନ୍ତି। ନୀଳମଣିର ବିଶ୍ୱାସ ହୁଏ ଯେ ବାବୁ ତାକୁ ବିଶେଷ କିଛି ଦେଇଯିବେ!

ଦିନେ ନୀଳମଣିକୁ ନଈ ସେପାରି ଗାଁକୁ ଯିବାକୁ ହେଲା। ପରଦିନ ସେ ଫେରିବା ବେଳକୁ ସୁଧାକରବାବୁ ଚାଲିଗଲେଣି। ସେ ବହୁତ ଆଶ୍ଚର୍ଯ୍ୟ ଓ ଦୁଃଖିତ ହେଲା। "ବାବୁଟି ତାକୁ କିଛି ନଦେଇ ଚାଲିଗଲେ!" ସେ ମନେ ମନେ ବାରମ୍ବାର ଏକଥା କହୁଥାଏ। ସେ ସୁଧାକରବାବୁଙ୍କ ପାଇଁ ବହୁତ ପରିଶ୍ରମ କରିଥିଲା।

ଏହାପରେ ପନ୍ଦର ବର୍ଷ ବିତିଗଲା। ନୀଳମଣି ବହୁତ ବୁଢ଼ା ହୋଇ ଯାଇଥାଏ। ସେ ଆଉ କାମଦାମ କରିପାରେ ନାହିଁ। ପ୍ରାୟ ଭିଖ ମାଗି ଚଳେ। କିନ୍ତୁ ସିଦ୍ଧପୁର କ୍ରମେ ସ୍ୱାସ୍ଥ୍ୟକର ସ୍ଥାନ ଭାବରେ ପ୍ରସିଦ୍ଧ ହୋଇ ଉଠୁଥାଏ। ଅଧିକ ଲୋକ ଆସୁଥାନ୍ତି।

ଦିନେ ସେ ଗୋଟିଏ କୋଠି ପିଣ୍ଡାରେ ବସିଛି, ଜଣେ ଭଦ୍ରଲୋକ ଆସି ଅଳ୍ପ ଦୂରରେ ଘୋଡ଼ାଗାଡ଼ିରୁ ଓହ୍ଲାଇଲେ ଓ ପାଖକୁ ଆସି ପଚାରିଲେ, "କହୋ, ଏ କୋଠି ଭଡ଼ାରେ ମିଳିବ?"

"ବାବୁ! ମିଳିପାରେ। ଘର ମାଲିକ ପଛ ପାଖରେ ବଗିଚାରେ ଅଛନ୍ତି। ପଚାରନ୍ତୁ।" ନୀଳମଣି କହିଲା।

"ତମେ କିଏ?" ଆଗନ୍ତୁକ ପଚାରିଲେ।

"ମୋ ନାମ ନୀଳମଣି। ମୁଁ ଜଣେ ଗରିବ ଲୋକ।"

"ଚଳୁଛ କିପରି?"

"ବାବୁ, ଯେତେବେଳେ କାମଦାମ କରି ପାରୁଥିଲି, ସେତେବେଳେ ଏଠାକୁ ଆସି ରହୁଥିବା ବାବୁମାନଙ୍କଠାରୁ କିଛି କିଛି ପାଉଥିଲି। ଏବେ ଆଉ ଦେଉଛି କାହିଁ? ଅଚଳ କହିଲେ ଠିକ୍ ହେବ। ବର୍ତ୍ତମାନ ଅନ୍ୟ କେତେ ଲୋକ ଅତିଥିମାନଙ୍କ ଚର୍ଚ୍ଚା କରି ଭଲ ଆୟ କରୁଛନ୍ତି।" ନୀଳମଣି କହିଲା।

"ବାବୁମାନେ କ'ଣ ତମକୁ ଯଥେଷ୍ଟ ଦେଉ ନଥିଲେ ? କିଛି ରଖି ପାରି ନାହିଁ ?" ଆଗନ୍ତୁକ ପଚାରିଲେ ।

"ଯଥେଷ୍ଟ ? କେହି କେହି କିଛି ନଦେଇ ବି ଚାଲି ଯାଉଥିଲେ ।"

"ସତେ ? କିଛି ନଦେଇ ଚାଲିଯିବା କୌଣସି ବାବୁଙ୍କ ନାମ ମନେ ଅଛି ?" ଆଗନ୍ତୁକ ପଚାରିଲେ ।

"ଜଣେ ସୁଧାକରବାବୁ ଥିଲେ । ଭାରି ଭଲ ଲୋକ । ସେ ବିଶେଷ କିଛି ଦେବେ ବୋଲି ମୁଁ ଆଶା କରିଥିଲି । କିନ୍ତୁ ମୋର ଦୁର୍ଭାଗ୍ୟ ଯେ ସେ ବିଦାୟ ନେଲାବେଳକୁ ମୁଁ ନଥିଲି । ତାଙ୍କର କ'ଣ ଆଉ ମୋ କଥା ମନେ ରହିଥିବ ? ସେ ଚାଲିଗଲେ ।" ନୀଳମଣି କହିଲା ।

ଆଗନ୍ତୁକ ବହୁତ ହସିଲେ ଓ କହିଲେ, "ନୀଳମଣି ! ତମେ ଯେପରି ତାଙ୍କୁ ଭୁଲି ନାହଁ, ସେ ବି ସେମିତି ତମକୁ ଭୁଲି ନାହାନ୍ତି । ତମେ ତାଙ୍କୁ ଭୁଲି ନାହଁ ସିନା, କିନ୍ତୁ ତାଙ୍କ କଣ୍ଠସ୍ୱର ଭୁଲି ଯାଇଛ । ଚେହେରା ବି ଭୁଲି ଯାଇଛ ।"

ନୀଳମଣି ହଠାତ୍ ଚମକି ଉଠିଲା । "ବାବୁ ! ଆପଣ ?" ସେ ଆଉ କିଛି କହି-ପାରିଲା ନାହିଁ ।

"ନୀଳମଣି, ତମେ ମୋଠୁଁ ବିଶେଷ କିଛି ଆଶା କରୁଥିଲ । ଶୁଣ । ଏହା ଭିତରେ ମୁଁ ଏଠି ଗୋଟାଏ କୋଠି କିଣିଛି । ତାହା ହେବ ନିୟମିତ ଅତିଥିଶାଳା । ତମକୁ କିଛି କରିବାକୁ ହେବ ନାହିଁ । ତମେ ସେ କୋଠିରେ ଗୋଟିଏ କୋଠରୀରେ ରହିବ । ସେଇଠି ଅତିଥିମାନଙ୍କ ପାଇଁ ସବୁଦିନେ ଖିଆପିଆ ବ୍ୟବସ୍ଥା ବି ରହିବ । ତମେ ଖିଆପିଆ କରିବ । ତମ ସେବା ଯୋଗୁଁ ଏଠାକୁ ଲୋକ ଆସୁଥିଲେ । ତେଣୁ ତମେ ବର୍ତ୍ତମାନ ଆମ ସେବା ପାଇବାକୁ ହକଦାର ।" ସୁଧାକରବାବୁ କହିଲେ ।

ନୀଳମଣି ଆନନ୍ଦରେ କାନ୍ଦି ପକାଇଲା ।



# ଦୃଷ୍ଟିକୋଣ

ରାଜନଗର ଗାଁରେ ବସ୍ତୁ ଦାସ ନାମରେ ଜଣେ ସ୍ୱଚ୍ଛଳ କୃଷକ ଥିଲେ । ମଧ୍ୟେ ମଧ୍ୟେ ତାଙ୍କ ଘରକୁ ପ୍ରାୟ ପାଞ୍ଚ ମାଇଲ ଦୂରରୁ ରଘୁ ଜେନା ନାମକ ଜଣେ ଲୋକ କଦଳୀ ବିକିବାକୁ ଆସୁଥାଏ । ଫେଣାଏ କଦଳୀକୁ ସେ ନେଉଥାଏ ଟଙ୍କାଟିଏ ।

ଥରେ ବସ୍ତୁ ଦାସଙ୍କର ବେଶି କଦଳୀ ଦରକାର ହେଲା । ସେ ନିଜେ ଯାଇ ରଘୁ ଜେନାର କଦଳୀ ବଗିଚାରେ ପହଞ୍ଚିଲେ ।

ରଘୁ ଜେନା ଗୋଟିଏ କଦଳୀ କାନ୍ଧି କାଟିଦେଲା । ସେଥିରେ ସାତ ଫେଣା କଦଳୀ ଥିଲା ।

"କେତେ ଦେବି ?" ବସ୍ତୁ ଦାସ ପଚାରିଲେ । "ଆଜ୍ଞା, ସାତ ଫେଣାକୁ ସାତ ଟଙ୍କା । ଅଧିକା ଆଉ ଟଙ୍କାଏ ଦେବେ !" ରଘୁ ଜେନା କହିଲା ।

"ଇଏ କପରି କଥା, ଜେନା ପୁଅ ? ତମ ଘରକୁ ମୁଁ ଆସିଲି । ପୁଣି ଏକାଥରେ ଏତେ ନେଲି । ତମେ ସିନା କମ ଦାମ ନେବା କଥା, ବେଶି ମାଗୁଛ କପରି ?" ବସ୍ତୁ ଦାସ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଆଜ୍ଞା, ମୋର ଦରକାର ଥିଲେ ମୁଁ ଯାଏଁ । ଆପଣଙ୍କ ଦରକାର ପଡ଼ିବାରୁ ଆପଣ ଆସିଛନ୍ତି । ତେଣୁ ଆପଣ ବେଶି ଦେବେ !" ରଘୁ ଜେନା ଉତ୍ତର ଦେଲା ।





# ଉତ୍ତର ରାମାୟଣ

ପରଦିନ ପ୍ରାତଃକାଳରୁହିଁ ଲବଣାସୁର ଆହାର ଖୋଜିବାକୁ ମଧୁପୁର ସୀମା ଛାଡ଼ି ଦୂରକୁ ଚାଲିଗଲା । ସୁଯୋଗ ଦେଖି ଶତ୍ରୁଘ୍ନ ଓ ତାଙ୍କ ସୈନ୍ୟମାନେ ଯମୁନା ନଦୀ ପାର ହୋଇ ଲବଣର ଗଡ଼ର ଚତୁର୍ଦ୍ଦିଗରେ ଘେରି ରହିଲେ । ଶତ୍ରୁଘ୍ନ ନିଜେ ନଗର ଦ୍ୱାର ଜଗି କରି ରହିଲେ ଯେପରି କି ତ୍ରିଶୂଳ ଆଣିବା ପାଇଁ ସେ ଗଡ଼ରେ ପଶି ପାରିବ ନାହିଁ ।

ଲବଣ ଫେରି ଆସି ନଗର ଦ୍ୱାରରେ ଶତ୍ରୁଘ୍ନଙ୍କୁ ଦେଖି କହିଲା, "ଆରେ ମାନବ, ତୁ କ'ଣ ମୋର ଆହାର ହେବା ପାଇଁ ଏଠାରେ ରହିଛୁ ?"

ଲବଣର କଥା ଶୁଣି ଶତ୍ରୁଘ୍ନ ରାଗି ଯାଇ କହିଲେ, "ଆରେ ଦୁଷ୍ଟ ଲବଣ, ମୁଁ ଆସିଛି ତୋତେ ସଂହାର କରିବା ପାଇଁ । ତୁ ଋଷି-ମୁନିମାନଙ୍କ ଉପରେ ଅଯଥା ଅତ୍ୟାଚାର କରି ବହୁ ପାପ ଅର୍ଜ୍ଜନ କରିଛୁ । ଆଜିହିଁ ସେସବୁର ଅବସାନ ହେବ । ମୁଁ ହେଉଛି ରାଜା ଦଶରଥଙ୍କ ପୁତ୍ର ଓ ଶ୍ରୀରାମଙ୍କ ସାନ ଭାଇ ଶତ୍ରୁଘ୍ନ ।"

ଶତ୍ରୁଘ୍ନଙ୍କ କଥା ଶୁଣି ଲବଣ ଅଟ୍ଟହାସ କରୁ କରୁ କହିଲା, "ତୋ ଭାଇ ରାମ ମୋ ମାମୁଁ ରାବଣକୁ ମାରିଛି । ସେକଥା ଶୁଣି ମଧ୍ୟ ମୁଁ ତୋ ଭାଇକୁ ଛାଡ଼ି ଦେଇଛି । ମୁଁ ଅନେକ ବଡ଼ ବଡ଼ ଯୋଦ୍ଧାଙ୍କୁ ଯୁଦ୍ଧରେ ପରାଜିତ କରିଛି । ତୁ ଆସିଛୁ ମୋତେ ସଂହାର କରିବାକୁ? ବୋଧହୁଏ ତୁ ମୋର ଜୀବନ ଚରିତ ବିଷୟ ଜାଣି ନାହୁଁ । ଦେବତା, ଗନ୍ଧର୍ବ ମଧ୍ୟ ମୋ

୧୧. ଶମ୍ବୁକ ବଧ



ପାଖରେ ହାରି ଯାଇଛନ୍ତି । ତୁ ତ ଜଣେ ବାଳକ ମାତ୍ର । ମୋର ତପସ୍ୟା ଶକ୍ତି ଓ ପରାକ୍ରମ ବିଷୟ ବା କାହୁଁ ବୁଝିବୁ ? ରହ, ମୋର ହତିଆର ସବୁ ଆଣିବାକୁ ଦେ । ତା'ପରେ ଦେଖିବୁ ।"

"ଆରେ ତୋ ନିଜ ସହିତ ଥିବା ହତିଆର ନେଇ ଯୁଦ୍ଧ କର । ସମୟ ନଷ୍ଟ କରିବାକୁ ମୁଁ ଚାହେଁ ନାହିଁ ।" ଶତ୍ରୁଘ୍ନ ଉତ୍ତର ଦେଲେ ।

ତା'ପରେ ଦୁଇପକ୍ଷର ଯୁଦ୍ଧ ଆରମ୍ଭ ହୋଇଗଲା । ଯୁଦ୍ଧରେ ଅସ୍ତ୍ରଶସ୍ତ୍ର କାଟିବା ବେଳେ ଏକ ବିରାଟ ଗଛ ଉପାଡ଼ି ଲବଣ ଶତ୍ରୁଘ୍ନଙ୍କ ଉପରେ ନିକ୍ଷେପ କଲା । ତାହା ତାଙ୍କ ଶିରରେ ଆଘାତ କରିବା ମାତ୍ରେ ସେ ମୂର୍ଚ୍ଛା ହୋଇଗଲେ । ଲବଣ ଭାବିଲା ଯେ ସେ ମରିଗଲେ । ତେଣୁ ଆଶ୍ରମରେ ଶିକାର ସବୁ ଧରି ଘର ଆଡ଼କୁ ଯାଉଛି ଏହି ସମୟରେ ଶତ୍ରୁଘ୍ନ ଚେତା ଫେରି ପାଇଲେ ଓ ବିଳମ୍ବ ନକରି ରାମ ଦେଇଥିବା ବାଣରେ ତାକୁ ମାରିଲେ ।

ଲବଣର ମୃତ୍ୟୁ ପରେ ଶତ୍ରୁଘ୍ନ ସେଠାରେ ରାଜା ହୋଇ ରାଜ୍ୟ ଶାସନ କଲେ । ବାରବର୍ଷ ପରେ ଜ୍ୟେଷ୍ଠଭ୍ରାତା ରାମଙ୍କୁ ଦର୍ଶନ କରିବାକୁ ତାଙ୍କର ଇଚ୍ଛା ହେଲା । ସେ ଅଳ୍ପ କିଛି ସୈନ୍ୟ ଧରି ଅଯୋଧ୍ୟା ଆସିଲେ । ବାଟରେ ବାଲ୍ମୀକିଙ୍କ ଆଶ୍ରମରେ ରାତି ଯାପନ କଲେ ।

ମହର୍ଷି ବାଲ୍ମୀକି, ଶତ୍ରୁଘ୍ନ ଓ ତାଙ୍କର ସୈନ୍ୟମାନଙ୍କର ସମୁଚିତ ଅତିଥି ସତ୍କାର କଲେ । ପରେ ବାଲ୍ମୀକିଙ୍କ ଦ୍ୱାରା ରଚିତ ରାମାୟଣ ଗାନ କରାଗଲା । ରାମଙ୍କ ଚରିତ ଶୁଣି ଶତ୍ରୁଘ୍ନ ଅତ୍ୟନ୍ତ ଆନନ୍ଦିତ ହେଲେ । ଏତେ ସୁନ୍ଦର ଭାବରେ ବାଲ୍ମୀକି ଅତୀତ ଘଟଣା ସବୁକୁ ବର୍ଣ୍ଣନା କରିଛନ୍ତି ଯେ ମନେ ହେଉଥିଲା ଯେପରି ତାହା ପ୍ରତ୍ୟକ୍ଷରେ ଦେଖି ହେଉଛି ।

ସେହି ରାତି ରାମକଥା ଶ୍ରବଣରେ ବିତିଗଲା । ପ୍ରତ୍ୟୁଷରୁ ଶତ୍ରୁଘ୍ନ ଅଯୋଧ୍ୟା ଅଭିମୁଖେ ପ୍ରସ୍ଥାନ କଲେ । ସେଠାରେ ପହଞ୍ଚି ସେ ଶ୍ରୀରାମଙ୍କର ଚରଣ ବନ୍ଦନା କରି କହିଲେ, "ପ୍ରଭୁଦେବ,

ଆପଣଙ୍କ ଆଦେଶ ଅନୁସାରେ ମୁଁ ଲବଣଙ୍କୁ ବଧ କରି ସେହି ରାଜ୍ୟ ଶାସନ କରୁଛି । ବହୁଦିନୁ ଆପଣଙ୍କ ଦର୍ଶନରୁ ବଞ୍ଚିତ ହୋଇଥିଲି । ଆଜି ଆପଣଙ୍କ ଚରଣ ବନ୍ଦନା କରି ନିଜକୁ କୃତାର୍ଥ ମଣୁଛି ।”

ଶ୍ରୀରାମଚନ୍ଦ୍ର ଶତ୍ରୁଘ୍ନଙ୍କୁ ଆଲିଙ୍ଗନ କରି କହିଲେ, “ଭାଇ ଶତ୍ରୁଘ୍ନ, ଜଣେ ରାଜା ପାଇଁ ତା'ର ରାଜ୍ୟହିଁ ସବୁ କିଛି । ରାଜଧର୍ମ କେବଳ ଶିର ଉପରେ ମୁକୁଟ ଧାରଣ କରିବା ପାଇଁ ଉଦ୍ଦିଷ୍ଟ ନୁହେଁ । ତାହା ଉଦ୍ଦିଷ୍ଟ ପ୍ରଜାଙ୍କ ମଙ୍ଗଳ ପାଇଁ ତାଙ୍କ କଲ୍ୟାଣ ପାଇଁ । ରାଜଧର୍ମ ପାଳନ କରିବା ବଡ଼ କଠିନ, ବଡ଼ ବିଷମ । ସମସ୍ତ ପ୍ରକାର ଐଶ୍ୱର୍ଯ୍ୟରେ ମଣ୍ଡିତ ହୋଇଥିଲେ ମଧ୍ୟ ରାଜା ପ୍ରକୃତ ଅର୍ଥରେ ହେଉଛନ୍ତି ପ୍ରଜାର ସେବକ । ତମେ ଜଣେ ପ୍ରକୃତ ପ୍ରଜାପାଳକ ରାଜାଭାବରେ ଖ୍ୟାତି ଅର୍ଜନ କର, ତାହାହିଁ ମୋର ତୁମ ପ୍ରତି ଶୁଭେଚ୍ଛା । ଯେତେବେଳେ ଇଚ୍ଛା ହେବ ଅଯୋଧ୍ୟା ଚାଲି ଆସିବ ।” ରାମ କହିଲେ ।

ଶତ୍ରୁଘ୍ନ କିଛିଦିନ ସେଠାରେ ରହିବା ପରେ ପୁଣି ଭାଇମାନଙ୍କଠାରୁ ବିଦାୟ ନେଇ ସପରିବାରେ ମଧୁପୁର ଚାଲିଗଲେ ।

ଏହାର କିଛିଦିନ ଭିତରୁ ଏକ ଦୁର୍ଘଟଣା ଘଟିଲା । ଜଣେ ବ୍ରାହ୍ମଣର ଏକମାତ୍ର ବାଳକପୁତ୍ରର ହଠାତ୍ ଅକାଳରେ ମୃତ୍ୟୁ ହେଲା । ସେ ଶିଶୁପୁତ୍ରର ଶବକୁ ଧରି ରାଜାଙ୍କ ନିକଟକୁ ଆସିଲା ଓ ବିଳାପ କରୁ କରୁ କହିଲା, ଯେ ରାଜା ଯଦି ପ୍ରକୃତରେ ଧର୍ମକୁ ଆଶ୍ରୟ କରି





ଶାସନ କରନ୍ତି ତେବେ ରାଜ୍ୟରେ କଦାପି ଅକାଳ ମୃତ୍ୟୁ ହେବ ନାହିଁ ।

ଏସବୁ ଶୁଣି ଶ୍ରୀରାମ ବଡ଼ ବ୍ୟଥିତ ହୋଇ କୁଳଗୁରୁ ବଶିଷ୍ଠ ଓ ଅନ୍ୟାନ୍ୟ ଋଷିମୁନିଙ୍କୁ ପ୍ରଶ୍ନ କଲେ ଏହାର କାରଣ କ'ଣ ହୋଇପାରେ ଓ ଏହାର ପ୍ରତିକାର କିପରି କରାଯିବ । ଦେବର୍ଷି ନାରଦ ସେତେବେଳେ ସେଠାରେ ଉପସ୍ଥିତ ଥିଲେ । ସେ କହିଲେ, "ମହାରାଜ ଶମ୍ବୁକ ନାମକ ଏକ ଶୂଦ୍ର ଘୋର ତପସ୍ୟା କରୁଅଛି । ଏହା ଯୁଗଧର୍ମର ବିପରୀତ । ସେଥିପାଇଁ ଏ ବାଳକର ମୃତ୍ୟୁ ହୋଇଅଛି ।"

ଏକଥା ଶୁଣି ଶ୍ରୀରାମ ଲକ୍ଷ୍ମଣଙ୍କୁ ଆଦେଶ ଦେଇ କହିଲେ, "ଲକ୍ଷ୍ମଣ, ଯାଅ ବ୍ରାହ୍ମଣଙ୍କୁ ତୁମେ ସାନ୍ତ୍ୱନା ଦିଅ ଓ ବାଳକର ମୃତଦେହକୁ ଏକ ତୈଳପାତ୍ରରେ ସୁରକ୍ଷିତ କରି ରଖ ।"

ତା'ପରେ ଶ୍ରୀରାମ ସ୍ୱୟଂ ସେହି ଶୂଦ୍ରକୁ ଖୋଜିବାକୁ ଗଲେ । ଖୋଜି ଖୋଜି ଶେଷରେ ଦକ୍ଷିଣ ଦିଗରେ ସେ ଦେଖିଲେ ଯେ, ସେହି ଶୂଦ୍ର ସ୍ୱଦେହରେ ସ୍ୱର୍ଗ ଗମନ କରିବାକୁ କଠୋର ତପସ୍ୟା କରୁଅଛି । ଶ୍ରୀରାମ ତା' ସହିତ ଅନେକ ସମୟ ଧରି କଥାବାର୍ତ୍ତା କରି ତାହାକୁ ସେଥିରୁ ନିବର୍ତ୍ତଇବାକୁ ଚେଷ୍ଟା କଲେ । କିନ୍ତୁ ସେ ଜିଦ୍ ଧରି ବସି ରହିଲା । ପୁଣି ତା'ର ତପସ୍ୟା ଯୋଗୁ ଅନେକ ବିପରୀତ ଫଳ ସବୁ ଦେଖା ଯିବାରୁ ଦେବତାମାନେ ଭୟଭୀତ ହୋଇଥିଲେ । ଅବଶେଷରେ ଶ୍ରୀରାମ ତାକୁ ବଧ କରି ଦେବତାମାନଙ୍କୁ ନିର୍ଭୟ କଲେ । ଏଣେ ବ୍ରାହ୍ମଣ ବାଳକଟି ମଧ୍ୟ ଜୀବନ ପାଇ ଉଠି ବସିଲା । ଦେବତାଙ୍କୁ ନିର୍ଭୟ ଓ ବ୍ରାହ୍ମଣଙ୍କୁ ପୁତ୍ରଦାନ କରି ସେ ଅଯୋଧ୍ୟାକୁ ଲେଉଟି ଆସିଲେ ।

ଫେରିବା ବାଟରେ ସେ ମହାମୁନି ଅଗସ୍ତ୍ୟଙ୍କୁ ଦେଖା କରିବା ପାଇଁ ତାଙ୍କ ଆଶ୍ରମକୁ ଯାଇଥିଲେ । ମହାମୁନି ଅଗସ୍ତ୍ୟ ଶ୍ରୀରାମଙ୍କର ଖୁବ୍ ଆଦର, ଯତ୍ନ କଲେ । ଅତ୍ୟନ୍ତ ଆନନ୍ଦିତ ହୋଇ ସେ ଶ୍ରୀରାମଙ୍କୁ ଏକ ବହୁମୂଲ୍ୟ ଅଳଙ୍କାର ପ୍ରଦାନ କଲେ । ଶ୍ରୀରାମ ତାହା ଆନନ୍ଦପୂର୍ବକ ଗ୍ରହଣ କରି ପଚାରିଲେ,

"ମୁନିବର, ଆପଣଙ୍କୁ ଏହି ଅଳଙ୍କାରଟି କିଏ ପ୍ରଦାନ କରିଥିଲା ?"

ସେହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଋଷି ଅଗସ୍ତ୍ୟ ଗୋଟିଏ କାହାଣୀ ଶୁଣାଇଲେ ।

"ପ୍ରାଚୀନ କାଳରେ ଏକସହସ୍ର ଯୋଜନର କ୍ଷେତ୍ରଫଳ ଥିବା ଏକ ବନ ଥିଲା । ତା' ମଧ୍ୟରେ ଏକ ସୁନ୍ଦର ସରୋବର ଥିଲା । ଦିନେ ମୁଁ ସେହି ବନ ମଧ୍ୟରେ ବୁଲି ବୁଲି ଏକ ଆଶ୍ରମ ଦେଖିଲି । ସେଠାରେ ମଣିଷ ବାସ କରିବାର କୌଣସି ଚିହ୍ନବର୍ଣ୍ଣ ନଥିଲା । ସେଠାରେ ମୁଁ କିଛି ସମୟ ରହିବା ପାଇଁ ମନସ୍ଥ କଲି । କାରଣ ସେହି ବନ ମଧ୍ୟ ଥିଲା ରହସ୍ୟମୟ । ଏତେ ବଡ଼ ବନ ମଧ୍ୟରେ କୌଣସି ପଶୁପକ୍ଷୀ ମଧ୍ୟ ନାହାନ୍ତି । ସେହି ଆଶ୍ରମରେ ରାତି ଯାପନ କରିବା ପରେ ପ୍ରତ୍ୟୁଷରୁ ଉଠି ମୁଁ ସରୋବର ନିକଟକୁ ଗଲି । ମୁଁ ଦେଖିଲି ଏକ ସଦ୍ୟମୃତ ମନୁଷ୍ୟର ଶବ ସେଠାରେ ପଡ଼ି ରହିଛି । ମୁଁ କିଛି ବୁଝିପାରିଲି ନାହିଁ । ମୁଁ ସେହିଠାରେ ନିତ୍ୟକର୍ମ ଶେଷ କରି ଅପେକ୍ଷା କରି ବସି ରହିଲି । କିଛି ସମୟ ପରେ ଆକାଶରୁ ଏକ ସୁନ୍ଦର ବିମାନ ସେଠାକୁ ଓହ୍ଲାଇ ଆସିଲା । ସେଥିରେ ବସିଥିଲେ ଅପ୍‌ସରାଗଣ ପରିବେଷ୍ଟିତ ଜଣେ ଦିବ୍ୟପୁରୁଷ । କିନ୍ତୁ ତାଙ୍କର ରୂପ ଶବର ରୂପପରି । ପୁଣି ସେ ବିମାନରୁ ଓହ୍ଲାଇ ସେହି ଶବଟିକୁ ବସି ବସି ଖାଇଲେ ଓ ତା'ପରେ ବିମାନ ଉପରକୁ ଯିବାକୁ ଅଗ୍ରସର



ହୁଅନ୍ତେ ମୁଁ ସେହି ଦିବ୍ୟପୁରୁଷଙ୍କ ପାଖକୁ ଯାଇ ପଚାରିଲି, "ମହାଶୟ, ମନେହୁଏ ଦିବ୍ୟବିମାନରେ ଆରୂଢ଼ ଓ ଅପ୍‌ସରାଗଣଙ୍କ ଦ୍ୱାରା ସେବିତ ଆପଣ ଜଣେ ଦିବ୍ୟପୁରୁଷ । କିନ୍ତୁ ଆପଣଙ୍କର ଏହି ଘୃଣ୍ୟ ଆହାରର କାରଣ କ'ଣ ?"

ମୋ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଉକ୍ତ ଦିବ୍ୟପୁରୁଷ କହିଲେ, "ମହାମୁନି, ମୁଁ ବିଦର୍ଭ ରାଜ୍ୟ ସୁଦେବଙ୍କ ଜ୍ୟେଷ୍ଠ ପୁତ୍ର ଥିଲି । ମୋର ନାମ ଥିଲା ଶ୍ୱେତ, ପିତାଙ୍କ ମୃତ୍ୟୁ ପରେ ମୁଁ ସିଂହାସନ ଆରୋହଣ କରି ଅନେକ ଦିନ ପର୍ଯ୍ୟନ୍ତ ରାଜ୍ୟ ଶାସନ କଲି । ମୋର ସଂସାର ଜୀବନ ପ୍ରତି ପୂର୍ବରୁହିଁ ବିତୃଷ୍ଣା ଥିଲା । ତେଣୁ



ଦିନେ ମୁଁ ମୋର କନିଷ୍ଠ ଭ୍ରାତା ସୁରଥର ରାଜ୍ୟାଭିଷେକ କରାଇ ବଣକୁ ଚାଲି ଆସିଲି ତପସ୍ୟା କରିବାକୁ। ସେଠାରେ ବହୁଦିନ ତପସ୍ୟା କରିବା ପରେ ଶରୀର ତ୍ୟାଗ କରି ମୁଁ ବ୍ରହ୍ମଲୋକକୁ ଚାଲି ଆସିଲି। କିନ୍ତୁ ସେଠାରେ ମଧ୍ୟ କ୍ଷୁଧାତୃଷା ମୋର ଅନୁଭୂତ ହେବାରୁ ଦୁଃଖିତ ହୋଇ ମୁଁ ବ୍ରହ୍ମାଙ୍କୁ ପଚାରିଲି, "ପ୍ରଭୁ, ମୁଁ ବ୍ରହ୍ମଲୋକରେ ପହଞ୍ଚିବା ପରେ ମଧ୍ୟ କାହିଁକି କ୍ଷୁଧାତୃଷା ମୋତେ ଛାଡୁ ନାହାନ୍ତି। କି ଅପରାଧ ମୁଁ କରିଛି?"

ବ୍ରହ୍ମଦେବ କହିଲେ, "ତୁମେ ତୁମର ରାଜ୍ୟଶାସନ ସମୟରେ ବା ତପସ୍ୟାରତ ଥିବା ସମୟରେ କେବେ କେଉଁ ଅତିଥିଙ୍କର ସତ୍କାର କରିନାହଁ। ନିଜର ସ୍ୱର୍ଗପ୍ରାପ୍ତି ବା ବ୍ରହ୍ମଲୋକ-ପ୍ରାପ୍ତି ବିଷୟରେ ଅଧିକ ଚିନ୍ତା କରୁଥିଲ। ଯଦି ବନରେ ତମେ ପଶୁପକ୍ଷୀଙ୍କୁ ଆହାର ଦେଇଥା'ନ୍ତ ତେବେ ମଧ୍ୟ ସେ ଦୋଷ କଟି ଯାଇଥା'ନ୍ତା। କିନ୍ତୁ ତୁମର ଦୁର୍ଭାଗ୍ୟରୁ ସେ ବନରେ ପଶୁପକ୍ଷୀ ନଥିଲେ। ତେଣୁ ବ୍ରହ୍ମଲୋକକୁ ଆସି ମଧ୍ୟ ତୁମେ କର୍ମଫଳ ଭୋଗ କରୁଛ। ଏଠାରେ କ୍ଷୁଧା ନିବୃତ୍ତି କରିବା ପାଇଁ କୌଣସି ବ୍ୟବସ୍ଥା ନାହିଁ, ତେଣୁ ତମେ ପ୍ରତିଦିନ ପୃଥିବୀକୁ ଫେରିଯାଇ ନିଜର ଶବ ଆହାର କରିବ; ପୁଣି ପରଦିନ ସେହି ଶବ ପୁଣି ଉଠିଥିବ। ପୁଣି ତମେ ତାକୁ ଖାଇବ। କିଛିଦିନ ପରେ ଯେବେ ତମେ ମହର୍ଷି ଅଗସ୍ତ୍ୟଙ୍କର ସତ୍‌ସଙ୍ଗ ଲାଭ କରିବ, ତାଙ୍କ କୃପାରୁ ଏହି ହୀନ ଅଭ୍ୟାସରୁ ନିବୃତ୍ତ ହୋଇ ଚିରକାଳ ପାଇଁ ସ୍ୱର୍ଗରେ ଅବସ୍ଥାନ କରିବ।"

ସବୁକଥା ଶୁଣି ମୁଁ ହସିଲି। ଦିବ୍ୟପୁରୁଷ ତତ୍‌କ୍ଷଣାତ୍ ଜାଣିପାରିଲେ ଯେ ମୁଁ ହିଁ ଅଗସ୍ତ୍ୟ। ତେଣୁ ସେ ହାତଯୋଡ଼ି ମୋତେ ପ୍ରାର୍ଥନା କରି କହିଲେ, "ମହାତ୍ମନ, ଅହୋ ଭାଗ୍ୟ, ଆଜି ମୁଁ ବହୁଦିନର ଇପ୍‌ସିତ ଆପଣଙ୍କ ଦର୍ଶନ ପାଇଲି। ଏବେ ଦୟାକରି ଏହି ଭୟଙ୍କର କାର୍ଯ୍ୟରୁ ମୋତେ ମୁକ୍ତ କରନ୍ତୁ। ତାହାହିଁ ବିଧି ନିର୍ଦ୍ଦିଷ୍ଟ।" ମୁଁ ତାଙ୍କୁ ଆଶିର୍ବାଦ ଦେଇ ସେଥିରୁ ମୁକ୍ତ କଲି। ରାଜା ଶ୍ୱେତ କୃତଜ୍ଞତା ସ୍ୱରୂପ ଉକ୍ତ ଦିବ୍ୟ ଅଳଙ୍କାରଟି ମୋତେ

ଦେଇ କହିଲେ, "ଯେତେବେଳେ ଯେଉଁ ପ୍ରକାରର ଦିବ୍ୟ ବସ୍ତ୍ର, ଦିବ୍ୟ ଆହାର ଓ ଦିବ୍ୟ ଅଳଙ୍କାର ଚାହିଁବେ, ଏହା ଆପଣଙ୍କୁ ଯୋଗାଇ ଦେବ।" ତା'ପରେ ସେ ଶାପମୁକ୍ତ ହୋଇ ସ୍ୱର୍ଗକୁ ଚାଲିଗଲେ।

ଏ କାହାଣୀ ଶୁଣିବା ପରେ ଶ୍ରୀରାମ ପ୍ରଶ୍ନ କଲେ, "ମୁନିବର, ଶ୍ୱେତ ଯେଉଁ ବନରେ ତପସ୍ୟା କରୁଥିଲେ ସେଠାରେ କାହିଁକି ପଶୁପକ୍ଷୀ ନଥିଲେ ?"

ଅଗସ୍ତ୍ୟ ପୁଣି ଏକ କାହାଣୀ ଶୁଣାଇଲେ, "ସତ୍ୟଯୁଗରେ ଚକ୍ରବର୍ତ୍ତୀ ମନୁ ନିଜ ପୁତ୍ର ଇକ୍ଷ୍ୱାକୁଙ୍କର ରାଜ୍ୟାଭିଷେକ କରାଇଲେ। ଇକ୍ଷ୍ୱାକୁଙ୍କର ଶହେ ପୁତ୍ରଙ୍କ ମଧ୍ୟରୁ ସର୍ବକନିଷ୍ଠ ଦଣ୍ଡ ଥିଲା ଅତ୍ୟନ୍ତ ଦୁଷ୍ଟ ଓ ମୂର୍ଖ। ତାକୁ ଇକ୍ଷ୍ୱାକୁ ବିନ୍ଧ୍ୟ ପ୍ରଦେଶ ଓ ସୈବଳ ପ୍ରଦେଶକୁ ରାଜ୍ୟସ୍ୱରୂପ ଦାନ କଲେ। ସେଠାରେ ଦଣ୍ଡ, ମଧୁମନ୍ତ ନାମକ ଏକ ସୁନ୍ଦର ନଗରୀ ନିର୍ମାଣ କରିଥାଏ। ସେଠାରେ ସେ ଶୁକ୍ରାଚାର୍ଯ୍ୟଙ୍କୁ ଗୁରୁ ମାନି ତାଙ୍କ ଉପଦେଶ ଅନୁସାରେ ରାଜ୍ୟ ଶାସନ କରି ରହିଥାଏ। ଦିନେ ରାଜା ଦଣ୍ଡ ବନରେ ବୁଲି ବୁଲି ଦେଖିଲା ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ସୁନ୍ଦରୀ ଅରଜା ମଧ୍ୟ ଏକାକୀ ବନରେ ବୁଲୁଛି। ଏହି ସୁଯୋଗ ଦେଖି ଦଣ୍ଡ ତା' ସହିତ ଅସଦ୍ ଆଚରଣ କଲା। ଗୁରୁକନ୍ୟା ବୋଲି ଜାଣି ସୁଦ୍ଧା ତା' ମନରେ କୌଣସି ବିବେକ ବୋଧ କାମ କଲାନାହିଁ।

ଏକଥା ଶୁକ୍ରାଚାର୍ଯ୍ୟ ଜାଣିବା ମାତ୍ରେ ଦଣ୍ଡକୁ ଅଭିଶାପ ଦେଇ କହିଲେ, "ମଧୁମନ୍ତ ନଗରୀର ଚାରିଦିଗରେ ଏକଶତ ଯୋଜନ ପର୍ଯ୍ୟନ୍ତ ସବୁ କିଛି ସାତଦିନ ମଧ୍ୟରେ ଭୟଙ୍କର ଧୂଳିଝଡ଼ରେ ନଷ୍ଟ ବିନଷ୍ଟ ହୋଇଯିବ।"

ତାହାହିଁ ହେଲା। ସେଥିପାଇଁ ସେଠାରେ ଏପର୍ଯ୍ୟନ୍ତ ପଶୁପକ୍ଷୀ ମଧ୍ୟ ଦେଖାଯା'ନ୍ତି ନାହିଁ।

ଶ୍ରୀରାମ ଅଗସ୍ତ୍ୟ ମୁନିଙ୍କ ସତ୍ସଙ୍ଗରେ କିଛି ସମୟ କଟାଇ, ତାଙ୍କଠାରୁ ବିଦାୟ ନେଇ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କଲେ।





# ଯୁକ୍ତିର ଶକ୍ତି

ପ୍ରାଚୀନ କାଳର କଥା, କାଶ୍ମୀରରେ ରାଜା ଅବନ୍ତିବର୍ମା ଶାସନ କରୁଥା'ନ୍ତି । ପ୍ରାକୃତିକ ଦୁର୍ଘଟଣା ଯୋଗୁ ରାଜ୍ୟ ଲୋକେ ସର୍ବଦା କଷ୍ଟ ଭୋଗ କରୁଥା'ନ୍ତି । ବିଶେଷତଃ ବନ୍ୟା ଓ ମରୁଡ଼ି ଯୋଗୁ ବରାବର ରାଜ୍ୟରେ ଖାଦ୍ୟାଭାବ ଓ ଦୁର୍ଭିକ୍ଷ ଦେଖାଦିଏ ।

କାଶ୍ମୀର ରାଜ୍ୟ ପାହାଡ଼ ତଳର ଦେଶ । ତେଣୁ ନଦୀମାନଙ୍କର ସ୍ରୋତ ପ୍ରଖର । ବର୍ଷା କାଳରେ ନଦୀରେ ଭୟଙ୍କର ବନ୍ୟା ଆସି ମହାପଦ୍ମ ନାମକ ହ୍ରଦକୁ ମଧ୍ୟ ପ୍ଳାବିତ କରେ ଓ ସେଠାରୁ ଚାରିଦିଗରେ ବନ୍ୟା ମାଡ଼ିଯାଇ ଫସଲ, କ୍ଷେତ ଗ୍ରାମ ସବୁ ନଷ୍ଟ କରେ । ଅସଂଖ୍ୟ ପ୍ରାଣୀ, ମନୁଷ୍ୟ ମଧ୍ୟ ମରିଯା'ନ୍ତି । ପାହାଡ଼ ନଦୀ ସବୁରେ ବନ୍ୟା ହୋଇ ବିତସ୍ତା ନଦୀରେ ପାଣି ପଡ଼େ । ବିତସ୍ତାରେ ବନ୍ୟା ହୋଇ ଚାରିଆଡ଼େ ପାଣି ମାଡ଼ିଯାଏ । ଏହି ପ୍ରାକୃତିକ ବିପଦ ପାଇଁ ରାଜା କୌଣସି ପ୍ରତିକାର କରିପାରୁ ନଥିଲେ ।

ରାଜା ଅବନ୍ତୀବର୍ମା ଥିଲେ ଧାର୍ମିକ । ତେଣୁ ସେ ଭାବୁଥିଲେ ହୁଏତ ତାଙ୍କର କେଉଁଠି କିଛି ଭୁଲ ରହିଯିବାରୁ ପରିଣାମ ସ୍ୱରୂପ ଏପରି ବନ୍ୟା ହେଉଛି । ତେଣୁ ସେ ବହୁତ ଯାଗ, ଯଜ୍ଞ, ଦେବାର୍ଚ୍ଚନ ଇତ୍ୟାଦି କରାଇଲେ । ତଥାପି ମଧ୍ୟ କିଛି ଫଳ ହେଲା ନାହିଁ ।

ଦିନେ ରାଜା ଶୁଣିବାକୁ ପାଇଲେ ସୁୟ୍ୟା ନାମକ ଏକ ବ୍ୟକ୍ତି ବାହାଦୁରୀ କରି ସମସ୍ତଙ୍କ ଆଗରେ କହୁଛି, "ରାଜା ମତେ ଦାୟିତ୍ୱ ଦେଲେ ମୁଁ ଏକାଥରକେ ବନ୍ୟା ବନ୍ଦ କରାଇଦେବି ।" ତା'ପରେ ରାଜା ତାକୁ ସଙ୍ଗେ ସଙ୍ଗେ ନଅରକୁ ଡକାଇ ପଠାଇଲେ, ସୁୟ୍ୟା ରାଜାଙ୍କୁ ପ୍ରଣାମ କରି ତଳକୁ ମୁହଁ କରି ଠିଆ ହୋଇ ରହିଲା ।

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ରାଜା ପଚାରିଲେ, "ତମେ ଗୃହଆଡ଼େ କହି ବୁଲୁଛ ବନ୍ୟା ତମେ ବନ୍ଦ କରିଦେଇ ପାରିବ । ଆମେ ଏତେ ଚେଷ୍ଟା କରି ମଧ୍ୟ ଯେଉଁଟା ପାରୁନାହୁଁ ତୁମେ ଏକେଲା ପାରିବ ?"

"ଆଜ୍ଞା ମହାରାଜ, ରାଜକୋଷରୁ ଯଥେଷ୍ଟ ଧନ ଖର୍ଚ୍ଚ କରିବେ ତ ଅସମ୍ଭବ କ'ଣ ? ମୁଁ କଥା ଦେଉଛି ବନ୍ୟା ବନ୍ଦ କରିଦେବି ।" ସୂର୍ଯ୍ୟା କହିଲା ।

"ତମର ଯେତେ ଧନ ଦରକାର ନିଅ । କିନ୍ତୁ ବନ୍ୟା ଯେପରି ବନ୍ଦ ହୁଏ । ତମେ ଏତେ ଦୃଢ଼ତାର ସହିତ କଥା କହୁଛ, ତେଣୁ ମୋର ତମ ଉପରେ ବିଶ୍ୱାସ ଆସି ଯାଇଛି । ଏବେ କାମ କର ।" ରାଜା କହିଲେ ।

ସୂର୍ଯ୍ୟା ରାଜକୋଷରୁ ନିଜେ ବୋହିନେବା ଭଳି ଏକ ବଡ଼ ଗଣ୍ଠିଲି ସୁନା ମୋହର ନେଇଗଲା । ମନ୍ତ୍ରୀ ଓ ଅନ୍ୟମାନେ ମଧ୍ୟ ରାଜାଙ୍କୁ ଏ ବିଷୟରେ କିଛି କହିଲେ ନାହିଁ । ସେ ରାଜଦରବାରରୁ ବାହାରକୁ ଆସିବା ମାତ୍ରେ ରାଜ୍ୟର ସାରା ଜନତା ତା' ପଛେ ପଛେ ଚାଲିଲେ । ସମସ୍ତେ ଅବାକ୍ । କିଏ କହିଲା, "ସୂର୍ଯ୍ୟାଟା ଭୁଲ୍ଲା ଠକଟାଏ, ରାଜାଙ୍କୁ ଠକି ଗୁଡ଼ାଏ ଧନ ନେଇଗଲା ।" କିଏ କହିଲା, "ସୂର୍ଯ୍ୟାଟା ପାଗଳ, ରାଜା କ'ଣ ତା' କଥାରେ ପଡ଼ି ପାଗଳ ହୋଇଗଲେ ନା କ'ଣ ତାକୁ ଏତେ ଧନ ଦେଇଦେଲେ ।"

ଏହିପରି ନାନା କଥା କହି କହି ସେମାନେ ସୂର୍ଯ୍ୟାର ପଛେ ପଛେ ଚାଲିଥା'ନ୍ତି, କାରଣ ସମସ୍ତେ ଜାଣିବାକୁ ଚାହୁଁଥିଲେ ସୂର୍ଯ୍ୟା ଏତେ ଗୁଡ଼ାଏ ସୁନା ମୋହର ନେଇ କରିବ କ'ଣ ।

ସୂର୍ଯ୍ୟା ଥିଲା ଖୁବ୍ ବୁଦ୍ଧିମାନ । ସେ ଦେଖିଲା ବିତସ୍ତା ନଦୀ ପାହାଡ଼ ପ୍ରଦେଶରୁ ତଳକୁ ପ୍ରଖର ଗତିରେ ବହିଯିବା ବେଳେ ବଡ଼ ବଡ଼ ପଥର ଖଣ୍ଡ ସବୁ ଉପରୁ ଗଡ଼ିଆସେ ସେଗୁଡ଼ିକ ଏକାଠି ହୋଇ ନଦୀ ସ୍ରୋତକୁ ବନ୍ଦ କରିଥାନ୍ତି । ତଳେ ସମତଳ ପ୍ରଦେଶ ଯୋଗୁ ପଥର ଖଣ୍ଡ ସବୁ ଅଧିକ ଆଗକୁ ଗଡ଼ି ନଯାଇ ଏକା ସ୍ଥାନରେ ଜମା ହୋଇ ରହିଥାଏ । ତେଣୁ ବର୍ଷା ଦିନରେ ନଦୀ ସ୍ରୋତର ଗତି ବ୍ୟାହତ ହେବାରୁ ହଠାତ୍ ବନ୍ୟା ଦେଖାଦିଏ ଓ

ରାଜ୍ୟର ବହୁ କ୍ଷତି ଘଟାଏ । ଏବେ ପଥର ସବୁକୁ ହଟାଇ ଦେଲେ ସବୁ ଠିକ୍ ହୋଇଯିବ । କିନ୍ତୁ ସେ କାମ କିଏ ବା କରିବ ।

ଏବେ ସୂଯ୍ୱା ଚାଲୁଥାଏ, ତା' ପଛରେ ହଜାର ହଜାର ଲୋକ । ସୂଯ୍ୱା ଯାଇ ସେହି ପଥର ଖଣ୍ଡ ସବୁ ଜମିଥିବା ସ୍ଥାନରେ ପହଞ୍ଚିଲା । ହଠାତ୍ ବଡ଼ ବଡ଼ ପଥର ଉପରକୁ ଉଠି ଯାଇ ଗଣ୍ଠିଲିରୁ ସୁନା ମୋହର କାଢ଼ି ପଥର ଭିତରକୁ ଓ ନଦୀ ଭିତରକୁ ଫିଙ୍ଗିଲା । ଏବେ ସମସ୍ତେ ବିସ୍ମିତ ହୋଇଗଲେ ଯେ ସୂଯ୍ୱା ଗୋଟାଏ ବଡ଼ ପାଗଳ । ଲୋକମାନେ ହାହାକାର କରୁଛନ୍ତି । କିନ୍ତୁ ସୂଯ୍ୱା କିଛି ନ ଶୁଣି ମୋହର ସବୁ ପଥର ଭିତରକୁ ଫିଙ୍ଗିବାରେ ଲାଗିଥାଏ । କିଛି ସମୟ ପରେ ମୋହର ପାଇବା ପାଇଁ ଲୋକମାନେ ନଦୀରେ ପଶି, ବଡ଼ ବଡ଼ ଠେଙ୍ଗା ଧରି ପଥର ସବୁ ହଟାଇବାରେ ଲାଗିଲେ । ମୋହର ସବୁ ମଧ୍ୟ ମଝିରେ ମଝିରେ ପାଉଥା'ନ୍ତି । ଆହୁରି ଖୁସିରେ କାମରେ ଲାଗି ପଡ଼ିଲେ । ସୂଯ୍ୱା ରାଜାଙ୍କଠାରୁ ଆହୁରି ମୋହର ଆଣି ଫିଙ୍ଗିଲା । ମୋହର ଯୋଗୁଁ ଲୋକମାନେ ଅଧିକ ଆନନ୍ଦ ଓ ଉତ୍ସାହର ସହିତ କାମରେ ଲାଗିପଡ଼ିଥା'ନ୍ତି କାରଣ ମଝେ ମଝେ ସୁନା ମୋହର ପାଇ-ଯାଉଥା'ନ୍ତି । ଦିନକ ମଧ୍ୟରେ ଲୋକମାନେ ପଥର ଗୁଡ଼ିକ କୂଳକୁ ଉଠାଇ ଦେଲେ । ନଦୀର ସ୍ରୋତ ଖୋଲିଗଲା ।

ତା' ପରଠାରୁ ବିତସ୍ତା ନଦୀରେ ଆଉ ବଢ଼ି ଆସିଲା ନାହିଁ । ଫସଲ କ୍ଷେତ ଭଲ ଭାବରେ ହେଲା । ଆଉ ଦୁର୍ଭିକ୍ଷର ଭୟ ରହିଲା ନାହିଁ । ସୂଯ୍ୱାର ଯୁକ୍ତି ଥିଲା ଅକାଟ୍ୟ । ନିଜର ବୁଦ୍ଧି ବଳରେ ଅସମ୍ଭବ କାର୍ଯ୍ୟକୁ ସେ ସମ୍ଭବ କରିପାରିଲା । ରାଜ୍ୟର ମଙ୍ଗଳ ହେଲା । ରାଜ୍ୟ ସାରା ଲୋକେ ତାକୁ ଧନ୍ୟ ଧନ୍ୟ କଲେ । ରାଜା ତାକୁ ବହୁ ଧନ ଓ ଉପାଧି ଦେଇ ସମ୍ମାନିତ କଲେ । ସେତେବେଳେ ଲୋକ ବୁଝିଲେ ତା'ର ପାଗଳାମିର ଅର୍ଥ ।



# ଅଭିଶାପ

ଉଜ୍ଜୟିନୀରେ ଜୟଦେବ ନାମକ ଏକ ରାଜକବି ଥା'ନ୍ତି । ସେ ଥିଲେ ଅସାଧାରଣ ମେଧାବୀ ଏବଂ ଶାସ୍ତ୍ରଜ୍ଞ ଓ ଉଚ୍ଚ ଖ୍ୟାତିସମ୍ପନ୍ନ । ତାଙ୍କ ପୁଅ ସୋମନାଥର ଯୁବକ ବୟସ ହେବା ମାତ୍ରେ ସେ ମଧ୍ୟ ଦରବାରର କବି ହେଲା । ସେ ମଧ୍ୟ ଥିଲା କବି, ଜ୍ଞାନୀ ଓ ଶାସ୍ତ୍ରଜ୍ଞ । କିନ୍ତୁ ପିତାଙ୍କ ପରି ନୁହେଁ ।

ଦିନେ ସୋମନାଥ ରାଜାଙ୍କ ପାଖକୁ ଯାଇ କହିଲା, "ମହାରାଜ, ଆପଣ ଆଜ୍ଞା ଦେଲେ ମୁଁ ପଡ଼ୋଶୀ ରାଜ୍ୟକୁ ଯାଇ ରହନ୍ତି ।"

"କିନ୍ତୁ କାହିଁକି? ତୁମ ପିତା କ'ଣ ତୁମ ଉପରେ ରୁଷ୍ଟ ହୋଇଛନ୍ତି?" ରାଜା ପଚାରିଲେ ।

"ନା, ନା ସେପରି ନୁହେଁ ।" ସୋମନାଥ କହିଲା ।

"ତାହେଲେ କ'ଣ ମୋ ରାଜ୍ୟରେ ତମେ ଯଥେଷ୍ଟ ସୁଖ ସୁବିଧା ପାଉନାହଁ?" ରାଜା ପଚାରିଲେ ।

"ନା, ନା, କଦାପି ନୁହେଁ । ତଥାପି ମୁଁ ଯିବାକୁ ଚାହେଁ ।" ସୋମନାଥ ଉତ୍ତର ଦେଲା ।

"ତେବେ କାହିଁକି ତମେ ରାଜ୍ୟ ଛାଡ଼ି ଯିବାକୁ ମନସ୍ଥ କରିଛ?" ରାଜା ପଚାରିଲେ ।

ସୋମନାଥ କିଛି କହିବାକୁ ଚେଷ୍ଟା କରି ଚୁପ୍ ରହିଲା ଓ ମୁଣ୍ଡ ତଳକୁ କରି ଠିଆ ହେଲା ।

ଏକଥା ଦେଖି ମନ୍ତ୍ରୀ ରାଜାଙ୍କୁ ଅନୁରୋଧ କଲେ ତାକୁ ଅନୁମତି ଦେବାକୁ । ରାଜା ଅନୁମତି ଦେଲେ । ସେ ଯିବା ପରେ ରାଜା ମନ୍ତ୍ରୀଙ୍କୁ ଏହାର କାରଣ ପଚାରିଲେ । ମନ୍ତ୍ରୀ କହିଲେ, "ସ୍ପଷ୍ଟ କଥା ମହାରାଜ, ଜୟଦେବଙ୍କ ପରି ମହାନ୍, ଅସାଧାରଣ, ପ୍ରତିଭାଶାଳୀ, ପଣ୍ଡିତ ପିତାର ପୁତ୍ର ହେବା ସୋମନାଥ ପାଇଁ ପରୋକ୍ଷରେ ଏକ ଅଭିଶାପ । ତା'ର ପ୍ରତିଭା ଏଠାରେ ବିକାଶ ହୋଇ ପାରିବ ନାହିଁ ।"

କହିବା ବାହୁଲ୍ୟ କିଛିଦିନ ପରେ ସୋମନାଥର ଯଶକୀର୍ତ୍ତି ଚାରିଆଡ଼େ ବିସ୍ତାର ଲାଭ କଲା । ଏବେ ସମସ୍ତେ ବୁଝିଲେ ସେ କାହିଁକି ଏ ରାଜ୍ୟ ଛାଡ଼ି ଚାଲିଗଲା ।





# ଜାମାତା ନିର୍ବାଚନ

[ ୨ ]

ଜୟ ବିଜୟ ଏବେ ରାଜଦୀପକୁ ନାନା ପ୍ରକାରରେ କଷ୍ଟ ଦେବାକୁ ଚେଷ୍ଟା କଲେ । ରାଜଦୀପର ଖାଦ୍ୟ ଦୁଇ ମୁଖିଆଙ୍କ ଘରୁ ଆସୁଥାଏ । ଦିନେ ଜୟ ବିଜୟ ରାଜଦୀପର ଖାଦ୍ୟରେ ଗୁଡ଼ାଏ ଲଙ୍କାଗୁଣ୍ଡ ଢାଳିଦେଲେ ରାଜଦୀପ ତ ଖାଇନେଲା, ତା'ର କିଛି ହେଲା ନାହିଁ । କିନ୍ତୁ ଜୟ ବିଜୟ ଖାଇବା ବେଳକୁ ଲଙ୍କାରେ ଦେହ ମୁଣ୍ଡ ସୁଦ୍ଧା ଜଳିଲା । ତା'ପରେ ସେମାନେ ଟିକିଏ ଶିକ୍ଷା ପାଇଲେ ଓ କିଛିଦିନ ଚୁପ୍ ରହିଲେ ।

କିଛିଦିନ ପରେ ଥରେ ପୁଣି ସେମାନଙ୍କ ମନ୍ଦର ଦୁର୍ବୁଦ୍ଧି ଦେଖାଦେଲା । ସେମାନେ ବିଷ ଆଣି ରାଜଦୀପର ଖାଦ୍ୟରେ ଭରି ଦେଲେ । ରାଜଦୀପ ଖାଇନେଲା ତା'ର କିଛି ହେଲା ନାହିଁ । କିନ୍ତୁ ଜୟ ବିଜୟ ନିଜର ଖାଦ୍ୟ ଖାଇବା ପରେ ବାନ୍ତି କରି ମୂର୍ଚ୍ଛା ହୋଇଗଲେ । ଦୁଇ ମୁଖିଆ ପୁଅ ଦୁହିଁଙ୍କର ଏ ଅବସ୍ଥା ଦେଖି ବ୍ୟସ୍ତ ହୋଇ ପଡ଼ିଲେ । ନାଡ଼ୀ ଦେଖିଲେ ନାଡ଼ୀ ମିଳୁନି । ଅବସ୍ଥା କ୍ରମେ ସାଂଘାତିକ ହୋଇ ଯାଉଛି । କିଛି ଉପାୟ ନ ପାଇ ସେମାନେ ରାଜଦୀପ ପାଖକୁ ଅଗତ୍ୟା ଗଲେ । କାରଣ ରାଜଦୀପର ଅଲୌକିକ ଶକ୍ତି ବିଷୟରେ ସେମାନେ ନିଶ୍ଚିତ ଥିଲେ । ରାଜଦୀପ ସବୁ ଶୁଣି କହିଲା,

"ମନେହୁଏ ସେମାନେ ମୋ ଖାଦ୍ୟରେ ବିଷ ମିଶାଇଥିଲେ, ମୁଁ ବାରବାର କହୁଛି ଯେ ମୋର ଯିଏ କ୍ଷତି କରିବାକୁ ଚାହିବ, ତା'ରହିଁ କ୍ଷତି ହେବ । ଏଥର ମୁଁ ବଞ୍ଚାଇ ଦେଉଛି । କିନ୍ତୁ ସାବଧାନ ଏହାର ପୁନରାବୃତ୍ତି ହେଲେ ଆଉ ବଞ୍ଚିବା ଅସମ୍ଭବ ।" ତା'ପରେ ସେ



ବଗିଗୃହରୁ କିଛି ପତ୍ର ଆଣି ଦୁହିଁଙ୍କ ମୁହଁରେ ସେ ପତ୍ରରସ ଦେବାରୁ ସେମାନେ ଉଠି ବସିଲେ । ତା'ପରେ ସେମାନେ ନିଜର ଦୋଷ ସ୍ୱୀକାର କଲେ । ଦୁଇ ମୁଖିଆ ସେମାନଙ୍କୁ ସାବଧାନ କରାଇ କହିଲେ, "ଆଉ କେବେ ରାଜଦୀପର ଅନିଷ୍ଟ କରିବାକୁ ତମେ ଚେଷ୍ଟା କରିବ ନାହିଁ । କଲେ ତୁମରି ଉପରେହିଁ ପଡ଼ିବ । ସାବଧାନ ।"

ତା'ପରେ ଜୟ ବିଜୟ ରାଜଦୀପର ପାଦ ଧରି କ୍ଷମା ମାଗିଲେ ଓ କହିଲେ, "ଆମ ଦୋଷ କ୍ଷମା କରନ୍ତୁ । ଆପଣ ପ୍ରକୃତରେ ଜଣେ ଶକ୍ତିଶାଳୀ ତାନ୍ତ୍ରିକ, ଏବେ ଆମକୁ ଭଲ ବୁଦ୍ଧି ଦେଇ ଭଲ ମଣିଷ କରାଇ ଦିଅନ୍ତୁ । ଆମେ ଆପଣଙ୍କ କଥାମାନ ଚଳିବୁ ।"

ରାଜଦୀପ କିଛି ସମୟ ଭାବିଲା ଓ ପରେ କହିଲା, "ଦେଖ ତୁମମାନଙ୍କୁ ସତ୍‌ମାର୍ଗରେ ନେବାପାଇଁହିଁ ମୁଁ ଏଠାକୁ ଆସିଛି । କିନ୍ତୁ ତମେ ନିଜେ ନ ଚାହିଁଲେ କିଛି ହେବ ନାହିଁ ।" ତା'ପରେ ସେ ବିଜୟର କାନ୍ଧରେ ହାତ ରଖି କହିଲା, "ବିଜୟ, କାଲି ତମେ ଜୟକୁ ଗ୍ରାମରେ ଛାଡ଼ି ଗ୍ରାମବାସୀଙ୍କ ସହ ଜଙ୍ଗଲକୁ ଯିବ । ସେଠାରେ ନିଜର ପସନ୍ଦ ଅନୁସାରେ ଗୋଟିଏ ଗଛ ବାଛି ତା' ଚାରିପାଖରେ ତିନିଥର ପରିକ୍ରମା କରିବ । ସେତେବେଳେ ଆଖି ବୁଜି ଶ୍ରୀବିଷ୍ଣୁଙ୍କ ନାମ ଜପ କରୁଥିବ । କିଛି ସମୟ ପରେ ଜଣେ ଦେବୀ ପ୍ରତ୍ୟକ୍ଷ ହେବେ । ତମେ ଦେବୀଙ୍କୁ ଦେଖିବା ମାତ୍ରେ କହିବ କି ତୁମକୁ ଜୟ ସେଠାକୁ ପଠାଇଛି । ଦେବୀ ତୁମମାନଙ୍କ ସହିତ ଏହି ଗ୍ରାମକୁ ଆସିବେ । ସେହି ଦେବୀ ତୁମ ଦୁହିଁଙ୍କର ହୃଦୟ ପରିବର୍ତ୍ତନ କରି ପାରିବେ ।"

ପରଦିନ ରାଜଦୀପର କଥା ଅନୁସାରେ ସବୁ କରାଗଲା । ବିଜୟ ଶ୍ରୀବିଷ୍ଣୁଙ୍କ ନାମ ଜପ କରୁଥିବା ବେଳେ ହଠାତ୍ ଗ୍ରାମବାସୀମାନେ ଚିତ୍କାର କରି କହିଲେ, "ଦେବୀ ପ୍ରତ୍ୟକ୍ଷ ହୋଇଗଲେ ।" ବିଜୟ ଆଖି ଖୋଲି ପଚାରିଲା "କ'ଣ ହେଲା ?" ଗ୍ରାମବାସୀମାନେ ବେହୋସ ହୋଇ ପଡ଼ିଥିବା ପ୍ରିୟମ୍ବଦାଙ୍କୁ ଦେଖାଇ ଦେଲେ । ବିଜୟ ନିକଟକୁ ଯାଇ ଦେଖିଲା ସେ ଦେବୀ ଅଚେତ ହୋଇ ପଡିଛନ୍ତି । ସେ ଗ୍ରାମ-

ବାସୀଙ୍କୁ ପାଣି ଆଣିବାକୁ କହିଲା । ମୁହଁ ଉପରେ କିଛି ପାଣିଛିଟିକା ଦେବାରୁ ପ୍ରିୟମ୍ବଦା ଆଖି ଖୋଲି ପଚାରିଲେ, "ମୁଁ କେଉଁଠି ?"

ବିଜୟ କହିଲା, "ଆମେ ଏହି ପାଖ ଗାଁର ନିବାସୀ । ଜୟ ଆମକୁ ପଠାଇଥିଲା ତୁମକୁ ନେଇ ଯିବାକୁ । ଏବେ ଆମ ସାଥିରେ ଗ୍ରାମକୁ ଚାଲ । ତୁମର ସବୁ ବ୍ୟବସ୍ଥା ସେଠାରେ କରିଦିଆ ଯିବ ।"



ଜୟର ନାମ ଶୁଣି ପ୍ରିୟମ୍ବଦା ଭାବିଲେ ଉଦ୍ୟାନରକ୍ଷୀ ଜୟ କଥା । ତେଣୁ ଖୁସିରେ ସେ ଗ୍ରାମକୁ ଯିବାକୁ ସ୍ୱୀକୃତ ହେଲେ । ଗ୍ରାମବାସୀମାନେ ଆଗରୁ ରାଜଦୀପର ଭବିଷ୍ୟତବାଣୀ ଶୁଣିଥିଲେ । ତେଣୁ ପ୍ରିୟମ୍ବଦାଙ୍କୁ ଦେବୀ ଭାବି ସେମାନେ ତତ୍‌କ୍ଷଣାତ୍ ଗ୍ରାମକୁ ଯାଇ ସବାରିଟିଏ ନେଇ ଆସି ସେଥିରେ ପ୍ରିୟମ୍ବଦାଙ୍କୁ ବସାଇ ନେଇ ରାଜଦୀପର ଘରେ ଛାଡି ଆସିଲେ ।

ଗ୍ରାମବାସୀମାନେ ଯିମିତ ଶୁଣିଲେ ଯେ ରାଜଦୀପର କଥା ଅନୁସାରେ ଦେବୀ ପ୍ରତ୍ୟକ୍ଷ ହେଲେ, ସଙ୍ଗେ ସଙ୍ଗେ ଦେବୀଙ୍କୁ ଦେଖିବାକୁ ସେମାନେ ଦଳ ଦଳ ହୋଇ ଆସିଲେ । ତା'ପରେ ସେମାନେ ଚମତ୍କୃତ ହୋଇ ଭାବିଲେ ଯେ ରାଜଦୀପ କେବଳ ରୋଗ ଶୋକ ଦୂର କରୁନାହିଁ ଯେ ତା' କଥାରେ ଦେବୀ ଦେବତା ମଧ୍ୟ ପ୍ରତ୍ୟକ୍ଷ ହୁଅନ୍ତି । ଗ୍ରାମବାସୀମାନେ ସେଠାରୁ ଚାଲିଯିବା ପରେ ରାଜଦୀପ ପ୍ରିୟମ୍ବଦାଙ୍କୁ ପଚାରିଲା, "ତମେ କିଏ ? ଅଚାନକ କୁଆଡୁ ବା ଆସି ପ୍ରତ୍ୟକ୍ଷ ହେଲ ?"

ପ୍ରିୟମ୍ବଦା ରାଜଦୀପର ଚେହେରା ଦେଖି ଅନୁମାନ କରିନେଲେ ଯେ ଏହି ଯୁବକଙ୍କର କିଛି ନା କିଛି ଅଲୌକିକ ଶକ୍ତି ଅଛି । ସେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ ଯେ ଏହି ଛୋଟ ଗ୍ରାମକୁ ଏ ଦିବ୍ୟପୁରୁଷ କାହିଁ ଆସିଲେ ? ନିଜ ବିଶ୍ୱାସ ଉପରେ ନିଶ୍ଚିତ ରହି ପ୍ରିୟମ୍ବଦା ନିଃସଙ୍କୋଚରେ ନିଜର ଜୀବନ କାହାଣୀ ରାଜଦୀପକୁ ଶୁଣାଇଲେ ।

ପ୍ରିୟମ୍ବଦାଙ୍କର କଥା ଶୁଣି ରାଜଦୀପ ନିଜ ପରିଚୟ ଦେଇ କହିଲା, "ଫରୁ କିଛି ବଚନ ମନେ ହେଉଛି । ତମେ ଜଣେ ଜୟକୁ ଖୋଜ



ଆଜି ଏକ ଜୟର ନାମ ଶୁଣି ଆସିଲ । ତମେ ଯେତେବେଳେ ଦେବୀ ହୋଇ ଏଠାକୁ ଆସିଛ, ତେବେ ଏ ଗ୍ରାମର କିଛି ମଙ୍ଗଳ କର । କିଛିଦିନ ଏଠାରେ ରହିଯାଅ । ଏବେ କୁହ ତୁମର କର୍ତ୍ତବ୍ୟ କ'ଣ ?"

ରାଜଦୀପର କଥା ଶୁଣି ପ୍ରିୟମ୍ବଦା କହିଲେ, "ତୁମକୁ ଦେଖି ମୋର ମନ, ପ୍ରାଣ, ହୃଦୟ ଆନନ୍ଦରେ ପୂରି ଉଠୁଛି । ମୁଁ ସର୍ବଦା ତୁମରି ସହିତ ରହି ଜନସେବାରେ ତୁମକୁ ସାହାଯ୍ୟ କରିବ । ଏକଥା ଯଦି ସମ୍ଭବ ହୁଏ ତେବେ ନିଜକୁ ମୁଁ ଅତ୍ୟନ୍ତ ଭାଗ୍ୟବତୀ ମନେ କରିବ ।"

ପ୍ରିୟମ୍ବଦାଙ୍କ କଥା ଶୁଣି କ'ଣ ଉତ୍ତର ଦେବ ଠିକ୍ କରି ନ ପାରି ରାଜଦୀପ କହିଲା, "ମୋର ମନେହୁଏ ତମେ ଚେଷ୍ଟା କଲେ ଜୟ ବିଜୟଙ୍କୁ ସତ୍‌ପଥକୁ ଫେରାଇ ଆଣି ପାରିବ । ତୁମେ ପ୍ରଥମେ ଏ କାମଟି କର ।"

"ତୁମେ ଯାହା କହିବ ମୁଁ ତା' କରିବ ।" ପ୍ରିୟମ୍ବଦା କହିଲେ ତା'ପରେ କିଛି ସମୟ ଆଲୋଚନା କରି ଦୁହେଁ ଖିଆପିଆ କଲେ । ପରେ ଅତ୍ୟଧିକ ପରିଶ୍ରମ ହେତୁ ପ୍ରିୟମ୍ବଦା ଗଭୀର ନିଦରେ ଶୋଇଗଲେ ।

ପ୍ରିୟମ୍ବଦାଙ୍କୁ ଦେଖିବା ଦିନଠାରୁ ଜୟ ବିଜୟ ସଂସାରର ସବୁକଥା ଭୁଲିଯାଇ ଖାଲି ତାଙ୍କରି କଥା ଭାବି ହେଉଥା'ନ୍ତି । ସବୁଦିନେ ଦେଖା କରନ୍ତି, କଥାବାର୍ତ୍ତା କରୁଥାନ୍ତି । ଦିନେ ଜୟ କହିଲା, "ତମେ କେତେ ସୁନ୍ଦର । ଯଦି ସବୁଦିନ ପାଇଁ ତମେ ଆମ ପାଖରେ ରହନ୍ତ ତେବେ କେତେ ଭଲ ନ ହୁଅନ୍ତା ।"

"ଏହା ତ ସମ୍ଭବ ନୁହେଁ । କିଛିଦିନ ପରେ ତ ମୁଁ ବିବାହ କରି ଏଠାରୁ ଚାଲିଯିବ ।" ପ୍ରିୟମ୍ବଦା କହିଲେ ।

"ବିବାହ କରି କ'ଣ ଏଠାରେ ରହି ପାରିବ ନାହିଁ ?" ବିଜୟ ବୋକାଙ୍କ ପରି ପଚାରିଲା ।

"ବିବାହ ପରେ ମୁଁ ମୋ ସ୍ୱାମୀ ପାଖରେ ରହିବ । ଏଠାରେ ରହିବା ସମ୍ଭବ ନୁହେଁ ।" ପ୍ରିୟମ୍ବଦା କହିଲେ ।

କିଛି ସମୟ ଭାବିଚିନ୍ତି ଜୟ କହିଲା, "ତେବେ ବରଂ ତମେ ମୋ ସହିତହିଁ ବିବାହ କର । କ'ଣ ଦୋଷ ଅଛି ?"

"ସେଥିରେ ବିଜୟ ସମ୍ମତ ତ ?" ପ୍ରିୟମ୍ବଦା କହିଲେ ।

"ନା, ଆଦୌ ନୁହେଁ । ସେ ପ୍ରଶ୍ନ ଉଠିଲେ ତ ଅଗ୍ରାଧିକାର ମୋର ।" ବିଜୟ ତତ୍‌କ୍ଷଣାତ୍ କହିଲା ।

ଏହି କଥା ଉପରେ ଦୁହେଁ ବାଦବିବାଦ, ଖୁବ୍ ଲଗାଇଲେ । ଶେଷରେ ପ୍ରିୟମ୍ବଦା ସେମାନଙ୍କୁ ବୁଝାଇ କହିଲେ, "ମୁଁ ତୁମମାନଙ୍କ ମଧ୍ୟରୁ ଜଣକୁ ବିବାହ କରିପାରନ୍ତି, କିନ୍ତୁ ସେ ରାଜଦୀପ ସେକଥା ଆଦୌ କରାଇ ଦେବ ନାହିଁ । ସେ ଟିକିଏ ଦୁଷ୍ଟ ସ୍ୱଭାବର ଅଟେ । ତେଣୁ ତୁମ ମଧ୍ୟରୁ ଯିଏ ତାକୁ ହରାଇ ଦେବ ମୁଁ ତା'ର ବେକରେହିଁ ବରଣମାଳ ଦେବି ।

"ରାଜଦୀପ ତ ଜଣେ ଯାଦୁକର । ତାକୁ ପରାଜିତ କରିବା ଆମ ଦୁହିଁଙ୍କ ପକ୍ଷେହିଁ ଅସମ୍ଭବ । ଅନ୍ୟ କିଛି ସର୍ତ୍ତ ରଖ ଆମେ ତାକୁ ପୂରଣ କରିବୁ ।" ଦୁହେଁ ଏକ ସ୍ୱରରେ କହିଲେ ।

"ତମେ ଯଦି ପ୍ରକୃତରେ ମୋତେ ବିବାହ କରିବାକୁ ଚାହଁ, ତେବେ ପୃଥିବୀର କୌଣସି କାର୍ଯ୍ୟ ତୁମପାଇଁ କଠିନ ହୋଇ ରହିବ ନାହିଁ । ତୁମେ ଏତିକି ମାତ୍ର ମୋ ପାଇଁ କରିପାରିବ ନାହିଁ ।" ପ୍ରିୟମ୍ବଦା କହିଲେ ।

"କିନ୍ତୁ ତୁମେ କାହିଁକି ରାଜଦୀପକୁ ହରାଇବା ପାଇଁ ଏତେ ଜିଦ୍ କରୁଛ ? ବିବାହ ପାଇଁ କ'ଣ ଏହା ଏକ ଜରୁରୀ ସର୍ତ୍ତ ?"

"ହଁ, ନିଶ୍ଚୟ ଜରୁରୀ । କାରଣ ମୁଁ କାହାକୁ ବିବାହ କଲେ ସେ ମୋତେ ଶୂନ୍ୟରେ ଉଠାଇ ନେଇ ଚାଲିଯିବ । ତା'ପରେ ? ତେଣୁ ତାକୁ ବିବାହ ପୂର୍ବରୁ ରାସ୍ତାରୁ ହଟାଇ ଦେଲେ ବିବାହ ପାଇଁ ଆଉ କିଛି ବାଧା ନଥିବ ।" ପ୍ରିୟମ୍ବଦା କହିଲେ ।

"ଠିକ୍ କଥା । କାଲିଠାରୁ ରାଜଦୀପକୁ ଯୁଦ୍ଧ କରି ପରାସ୍ତ କରିବା ପାଇଁ ଆମେ ଦୁହେଁ ଲାଗି ପଡ଼ିବୁ । ତା'ପରେ ବିବାହ ।" ଜୟ ବିଜୟ ଏକ ସ୍ୱରରେ କହିଲେ ।





# ଠାକୁରଙ୍କ ମଥା

ବୁନ୍ଦେଲ୍‌ଖଣ୍ଡର ଏକ ପୁରୁଣା ରାଜବଂଶର ଜୟପାଳ ସିଂହ ନାମରେ ଜଣେ ଠାକୁର ଥା'ନ୍ତି । ସେ କ୍ରମେ ଗରିବ ହୋଇଯାଇଥିଲେ ମଧ୍ୟ ବାହାରେ ରାଜବଂଶର ଥାଟଟା ବଜାୟ ରଖିଥା'ନ୍ତି । ନିଜ ବଂଶର ଓ ପୂର୍ବପୁରୁଷଙ୍କର ବାହାଦୁରି ଓ ବୀରତ୍ୱର କାହାଣୀ ସବୁ କହି ସେ ନିଜର ଓ ଅନ୍ୟ ମାନଙ୍କର ସମୟ ନଷ୍ଟ କରୁଥା'ନ୍ତି ।

ଦିନେ ଠାକୁର ସେଠ୍ ପୀତାମ୍ବରଙ୍କ ସହିତ ରାସ୍ତାରେ ଠିଆ ହୋଇ ଗଳ୍ପ କରୁଥା'ନ୍ତି । ସେତିକିବେଳେ ଦୂରରୁ ଗୋଟିଏ ବଳଦଗାଡ଼ି ଆସୁଥାଏ । ସେଥିରେ ଅନେକ ଗୃଜଳ ବସ୍ତା ସବୁ ଲଦା ହୋଇଥା'ଏ । ସେ ଗାଡ଼ିକୁ ଦେଖି ଠାକୁର କହିଲେ, "ବାଃ, କେତେ ବଡ଼ ହାତୀଟାଏ ଆସୁଛି । ମୋ ଅଜାଙ୍କର ଏମିତି ଗୋଟାଏ ବଡ଼ ହାତୀ ଥିଲା ।"

ସେଠ୍‌ଜୀ କହିଲେ, "କ'ଣ ହେଲା ? ହାତୀ ଆସୁଛି ? ଠାକୁର୍ ସାହେବ ଆପଣଙ୍କର ଭ୍ରମ ହୋଇଗଲାଣି । ହାତୀ ନୁହେଁ, ବସ୍ତା ଲଦା ହୋଇ ଏକ ବଳଦଗାଡ଼ି ଆସୁଛି ।"

"ଭ୍ରମ ମୋର ନୁହେଁ, ମନେହୁଏ ତୁମର ହୋଇଛି । ଏଇତ ସ୍ପଷ୍ଟ ହାତୀଟାଏ ଇଆଡ଼କୁ ଆସୁଛି ।" ଠାକୁର୍ କହିଲେ ।

"କି ଆଶ୍ଚର୍ଯ୍ୟ । କହୁଛି ପରା ବସ୍ତା ଲଦା ହୋଇ ବଳଦଗାଡ଼ି ଆସୁଛି ।" ସେଠଜୀ କହିଲେ ।

"ଦେଖ ବେଶି ଗୁଡ଼ାଏ ବକ୍ ବକ୍ କରନାହିଁ । ହାତୀ ହୋଇଥିଲେ ତମେ ହାରିବ ଓ ମୁଁ ତୁମ ମଥାଟି କାଟି ଦେବି । ଆଉ ଯଦି ବଳଦଗାଡ଼ି ହୁଏ ତ ତୁମେ ମୋର ଶିରଚ୍ଛେଦ କରିବ । ଏଇ ରହିଲା ଆମର ସର୍ତ୍ତ ।" କହିଲେ ଠାକୁର ।

କିଛି ସମୟ ପରେ ବଳଦଗାଡ଼ି ଆସି ସେଠାରେ ପହଞ୍ଚିଲା । ସେଠ୍‌ଜୀ କହିଲେ,

ବୁନ୍ଦେଲ୍‌ଖଣ୍ଡର ଲୋକକଥା

"ଏବେ ଭଲ କରି ଦେଖିନିଅ ଠାକୁର ସାହେବ ଏଇଟା ହାଣ୍ଡି ନୁହେଁ ବଳଦଗାଡ଼ି ଆଉ ତୁମର ମୁଣ୍ଡଟା ଏବେ ମୋର । ସର୍ତ୍ତ ମନେ ଅଛି ତ ?"

"ହଁ, ତୁମ କଥାହିଁ ସତ୍ୟ । ଏବେ ତୁମେ ମୋର ମଥା କାଟି ନିଅ ।" ଠାକୁର କହିଲେ ।

"ଛାଡ଼ । ବାଜି ତ ତମେ ମାରିଥିଲ । ତମେ ହାରିଯାଇ ଯଦି ଶିକ୍ଷା ପାଇଲ ସେଇ ଯଥେଷ୍ଟ !" ସେଠ୍‌ଜୀ କହିଲେ ।

"ସେପରି ତ ହୋଇ ପାରେନା । ତୁମକୁ ମୋ ମଥା କାଟିବାକୁହିଁ ପଡ଼ିବ । ଆମେ ରାଜବଂଶୀ ଠାକୁର୍ । ନିଜର ବଚନରୁ ଅଲଗା ହୋଇପାରିବୁ ନାହିଁ ।" ଠାକୁର୍ କହିଲେ ।

ସେଠ୍‌ଜୀ ବଡ଼ ମୁସ୍କିଲ୍‌ରେ ପଡ଼ିଲେ । ଏବେ କ'ଣ କରାଯାଏ । ସେ କହିଲେ, "ଚାଲ, ଆମେ ନ୍ୟାୟାଧୀଶଙ୍କ ପାଖକୁ ଯିବା ସେ ଯାହା କହିବେ ତାହାହିଁ କରାହେବ ।"

ଦୁହେଁ ଯାଇ ନ୍ୟାୟାଧୀଶଙ୍କ ପାଖରେ ପହଞ୍ଚିଲେ । ସେ ସବୁ ଶୁଣି କହିଲେ, "ଏ ସର୍ତ୍ତ ଅନୁସାରେ ଠାକୁର ସାହେବଙ୍କ ମଥା ଏବେ ସେଠ୍‌ଙ୍କ ସମ୍ପତ୍ତିର ଅଂଶଭୁକ୍ତ । ସେ ଚାହିଲେ କାଟିବେ ବା ଚାହିଲେ ରଖିବେ ।"

ଏକଥା ଶୁଣି ଦୁହେଁ ଖୁସି । କିନ୍ତୁ ପର ମୁହୂର୍ତ୍ତରେ ସେଠ୍‌ଜୀଙ୍କ ମୁହଁ ଶୁଖିଗଲା; କାରଣ ଠାକୁର୍‌ଜୀ କହିଲେ, "ତେବେ ତୁମେ ମୋ ମଥା ନ କାଟି ରକ୍ଷା କରିବା ମାନେ ମୋ ମଥାର ଭରଣପୋଷଣ ଦାୟିତ୍ୱ ତୁମର ।"



ସେଠ୍‌ଜୀ ବାଧ୍ୟ ସେଇଦିନଠାରୁ ଠାକୁର୍‌ଙ୍କର ମଥା ରକ୍ଷା କରିବାର ଦାୟିତ୍ୱ ନେଲେ । ତାଙ୍କୁ ରାଜବଂଶ ଠାଟରେ ଚଳାଇବା ବେଳକୁ ସେଠ୍‌ଜୀଙ୍କ ପଇସା ବହୁତ ଖରଚ ହୋଇଗଲା ହେଲେ କିଛି ଉପାୟ ନାହିଁ ।

କିଛିଦିନ ପରେ । ସେଠ୍‌ଙ୍କର କେତେକ ଅନ୍ତରଙ୍ଗ ବନ୍ଧୁ ଏକଥା ଶୁଣି ତାଙ୍କୁ ସେଥିରୁ ମୁକ୍ତି ଦେବାକୁ କିଛି ଉପାୟ ସେମାନେ ବତାଇ ଦେଲେ ।

ପୂର୍ବ ଯୋଜନା ଅନୁସାରେ ପରଦିନ ଜଣେ ଲୋକ ଡାକ ଡାକ ଯାଉଥାଏ, "ଆମେ ନାକ ଓ କାନ କିଣିବାକୁ ଚାହୁଁ । କିଏ ବିକିବ ?"

ସେଠ୍‌ଜୀ ଲୋକଟିକୁ ଡାକି ପଚାରିଲେ, "ଆରେ ଭାଇ, ପ୍ରକୃତରେ କୁହ ତୁମେ କ'ଣ କିଣିବାକୁ ଚାହଁ ?"

"ବାବୁ, ମୁଁ ଜୀବନ୍ତ ମଣିଷର ନାକ ଓ କାନ କିଣିବାକୁ ଚାହେଁ ।" ଲୋକଟି କହିଲା ।

"ଦାମ୍ କେତେ ଦେବ ?" ସେଠ୍‌ଜୀ ପଚାରିଲେ ।

"ଯଦି ଲୋକଟି ଭଲ ବଂଶର ହୋଇଥାଏ ତେବେ ନାକଟି ଓ କାନ ଦୁଇଟି ପାଇଁ ସବୁ ମିଶି ପାଞ୍ଚଶ ଟଙ୍କା ଦେବି ।" ଲୋକଟି କହିଲା ।

ସେଠ୍‌ଜୀ ତାକୁ ଠାକୁରଙ୍କ ପାଖକୁ ନେଇଯାଇ କହିଲେ, "ଏହି ବ୍ୟକ୍ତି ପ୍ରତିଷ୍ଠିତ ରାଜବଂଶର ଠାକୁର ସାହେବ । ତାଙ୍କର ମଥା ମୋ ହାତରେ ଅଛି । ତମେ ମୋତେ ପାଞ୍ଚଶ ଟଙ୍କା ଦେଇ ତାଙ୍କର ନାକକାନ କାଟି ନେଇପାର ।"

ଭୟରେ ଥରି ଉଠି ଠାକୁର କହିଲେ, "ସେଠ୍‌ଜୀ ଏହା ତ ବଡ଼ ଅନ୍ୟାୟ କଥା ।"

"ଅନ୍ୟାୟ କିପରି ? ଆପଣଙ୍କ ମଥା ତ ମୋର ସମ୍ପତ୍ତି ।" ସେଠ୍‌ଜୀ କହିଲେ ।

ଠାକୁର କହିଲେ, "ବରଂ ଥରେ ଚାଲ ନ୍ୟାୟାଧୀଶଙ୍କ ପାଖକୁ ଯିବା ।" ପୁଣି ଦୁହେଁ ନ୍ୟାୟାଧୀଶଙ୍କ ପାଖକୁ ଗଲେ । ସେ ସବୁ ଶୁଣି କହିଲେ, "ଠାକୁର ସାହେବ, ଆପଣଙ୍କ ନାକ କାନ ବିକ୍ରି କରିବାର ଅଧିକାର ସେଠଜୀଙ୍କର ପୂରା ଅଛି । ଆଜି ପର୍ଯ୍ୟନ୍ତ ସେ ତୁମର ମଥାକୁ ରକ୍ଷା କରିବା ପାଇଁ ଅନେକ ପଇସା ଖର୍ଚ୍ଚ କରିଛନ୍ତି । ଯଦି ତୁମେ ନାକ କାନ କାଟିବାକୁ ସ୍ୱୀକାର ନକର ତେବେ ଆଜି ପର୍ଯ୍ୟନ୍ତ ସେ ତୁମ ପିଛା ଯାହା ଖର୍ଚ୍ଚ କରିଛନ୍ତି ସେସବୁର ମୂଳ ଓ ସୁଧ ମିଶାଇ ସବୁ ଦେଇଦିଅ ।"

ନ୍ୟାୟାଧୀଶଙ୍କ କଥା ଶୁଣି ଠାକୁର ସାହେବ କିଛି କହିପାରିଲେ ନାହିଁ । ଯାହା କିଛି ଅଳ୍ପ ସମ୍ପତ୍ତି ଥିଲା ସେତିକି ବିକ୍ରି କରି ସେଠଙ୍କୁ ତାଙ୍କ ଟଙ୍କା ଶୁଝି ଦେଲେ ଓ ବଳକା ଟଙ୍କାତକ ଧରି ସେ ଅଞ୍ଚଳ ଛାଡି ଦୂରକୁ ପଳାଇ ଗଲେ ।



## ବିଧ୍ୱଂସକ ପୋକ



ମରୁଭୂମିର ଏହି ପତଙ୍ଗ ନିଜ ଦେହର ଓଜନଠାରୁ ଅଧିକ ଖାଦ୍ୟ ପ୍ରତିଦିନ ଖାଏ । ବଡ଼ ବଡ଼ ପତଙ୍ଗର ଦଳ ଦିନକ ଭିତରେ ୨୦,୦୦୦ ଟନ୍‌ର ଫସଲ ଖାଇଯାଇ ପାରନ୍ତି । ୧୭୮୪ରେ ଦକ୍ଷିଣ ଆଫ୍ରିକାରେ ଦେଖାଦେଇଥିବା ଏହି ପତଙ୍ଗର ଏକ ଦଳ ଏପର୍ଯ୍ୟନ୍ତ ସର୍ବାପେକ୍ଷା ବୃହତ୍ତମ । ସେମାନେ ପ୍ରାୟ ୨୦୦୦ ବର୍ଗ ମାଇଲ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲେ ।

ଖ୍ରୀଷ୍ଟପୂର୍ବ ୨୦,୦୦୦,୦୦୦ ରୁ ୪୦,୦୦୦,୦୦୦ ବର୍ଷର ମଧ୍ୟକାଳରେ ଏକ ପ୍ରକାର ଜୀବ ପୃଥିବୀ ଉପରେ ଥିଲେ । ସେମାନଙ୍କୁ ବାଲୁଚିଥେରିୟମ୍ ବୋଲି ନାମିତ କରାଯାଇଛି । ଏହି ପଶୁମାନଙ୍କର ଲମ୍ବା ପ୍ରାୟ ୨୭ ଫୁଟ୍ ଓ ଓଜନ୍ ୨୦ ଟନ୍ ଥିଲା ।

## ବିଶାଳତମ ଭୂଚର



## ଉଷ୍ଣ ଜଳସ୍ରୋତ



ଆମେରିକାର ୟେଲୋଷ୍ଟୋନ୍ ନ୍ୟାସନାଲ ପାର୍କରେ "ଓଲ୍ଡ ଫେଥ୍‌ଫୁଲ୍" ନାମକ ପୃଥିବୀର ଅନ୍ୟତମ ବିଖ୍ୟାତ ଉଷ୍ଣ-ପ୍ରସ୍ରବଣ ଅଛି । ଏହା ଘଣ୍ଟାରେ ଥରେ ୧୪୦ ଫୁଟ୍ ଉପରକୁ ଫୁହାର ଦେଇ ଉଠେ ।"

# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଅକ୍ଟୋବର ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



D. Jagadish Babu



Sundara Murthy

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଅଗଷ୍ଟ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଜୁନ '୮୬ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ମିଛଟାରେ କୁନା ହସୁଥାଏ ଯିନା, ଆଖିରେ ତା' ଲୁହ ନାହିଁ !

ଦ୍ୱିତୀୟ ଚିତ୍ର : ପାଳୁଆପାଟିରେ ହସୁଛନ୍ତି ଅଳା, ଗୋଟେ ହେଲେ ଦାନ୍ତ ନାହିଁ !!

ପୁରସ୍କାର ବିଜୟିନୀ : ମମତା ଦାଶ, କେଉଁଝର ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗ୍ସ, ବଡ଼ପଲାନୀ, ମାଡ୍ରାସ-୬୦୦୦୨୬

ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେସନ୍ସ, ଚନ୍ଦାମାମା ବିଲ୍ଡିଙ୍ଗ୍ସ, ବଡ଼ପଲାନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳା ସହିତ ନୂତନ କାହାଣୀମାଳାର ଅପୂର୍ବ ସମନ୍ୱୟ ।

* ସରଳ ଓ ସଂଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।

* ହାସ୍ୟରସ ସହ ମାନବକଥା ଓ ଜାତୀୟତାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।

* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।

* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।

* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୁରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :


## ଡଲ୍‌ଟନ୍ ଏଜେନ୍‌ସିଜ୍

ଚନ୍ଦାମାମା ବିଲ୍‌ଡିଂସ୍,

ବଡପଲନୀ, ମାଡ୍ରାସ-୬୦୦୦୨୬